# ଓଡ଼ିଆ ଗବେଷଣା ପରିଷଦ

## The Institute of Oriya Studies

Saraswat Nilay, Chhatrabazar, Cuttack-12

( Regd. No. CTC. 290-290/1980.81 )

## ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା

ସଂପାଦକ-ମଣ୍ଡଳୀ :

ଡକ୍ଟର କୃଷ୍ଣଚରଣ ବେହେରା
ଡକ୍ଟର ନରେନ୍ଦ୍ରନାଥ ମିଶ୍ର
ଡକ୍ଟର ହେମନ୍ତକୁମାର ଦାସ

ସଂପାଦକ :

**ଡକ୍ଟର କ୍ଷେତ୍ରବାସୀ ନାୟକ**

# ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷା

( ଏକ ସଂଳାପ )

ପ୍ରାବନ୍ଧିକବୃନ୍ଦ :

ଡକ୍ଟର ନରେନ୍ଦ୍ରନାଥ ମିଶ୍ର

ଶ୍ରୀ ଚିତ୍ତରଞ୍ଜନ ଦାସ

ଡକ୍ଟର ଅନନ୍ତଚରଣ ଶୁକ୍ଳ

ଅଧ୍ୟାପକ ଅଭିନ୍ନଚନ୍ଦ୍ର ସାହୁ



୧୯୮୨

ଓଡ଼ିଆ ଗବେଷଣା ପରିଷଦ

ଦାରସ୍ୱତ ନିଳୟ, ଛତ୍ରବଜାର, କଟକ-୭୫୩୦୧୨

# ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା

(ଏକ ସଂପାନ)

ପ୍ରଥମ ପ୍ରକାଶ—୧୯୮୨



ପ୍ରଚ୍ଛଦସଜ୍ଜା—ଶିଳ୍ପୀ ଶ୍ରୀ ଉଦୟନାରାୟଣ ଜେନା

ମୁଦ୍ରଣ—ସତ୍ୟବ୍ରତ ପ୍ରେସ୍, ପୀଠାପୁର, କଟକ-୧

ପରିବେଷକ—ପୁସ୍ତକ ଭଣ୍ଡାର, ବ୍ରହ୍ମପୁର-୧ ଓ କଟକ-୨
ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨
ବୁକ୍ସ୍ ଇଣ୍ଟରନେସନାଲ୍, ବାଙ୍କାବଜାର, କଟକ-୨

ମୂଲ୍ୟ—ପନ୍ଦର ଟଙ୍କା ମାତ୍ର

The Institute of Oriya Studies
Publication No. 2
**'Sarjanatmaka Sahitya Samikshya'**
( Creative Criticism : A Symposium )
Published in 1982
Distributors—
Pustak Bhandar,
Berhampur—1 and Cuttack-2
Friends' Publishers, Cuttack-2
Books International, Cuttack-2

Price Rs. **Fifteen** only

---

Paper used in this book is supplied by the Govt. of India on Concessional rate.

# ସୂଚୀପତ୍ର



●

## ‘ଓଡ଼ିଆ ଗବେଷଣା ପରିଷଦ’ର କେତୋଟି ଉଲ୍ଲେଖନୀୟ ପ୍ରକାଶନ :

୧। ଏଷଣା ପ୍ରବନ୍ଧାବଳୀ—ପ୍ରଥମଭାଗ
୨। ଶ୍ରୀବେଢ଼ା—କବି ବଳରାମ ଦାସ, ସମ୍ପାଦନା—ଡକ୍ଟର ମମାନନ୍ଦ ମହାନ୍ତି
୩। ‘ଏଷଣା’ ଜର୍ଣ୍ଣାଲ୍—ଦ୍ୱିତୀୟ, ତୃତୀୟ ଓ ଚତୁର୍ଥଖଣ୍ଡ
[ପ୍ରଥମଖଣ୍ଡ ନିଃଶେଷ ହୋଇଯାଇଛି]
୪। ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା } ପ୍ରକାଶ ଅପେକ୍ଷାରେ
୫। ଗବେଷଣା-ବିଧି } ପ୍ରକାଶ ଅପେକ୍ଷାରେ

ପ୍ରାପ୍ତିସ୍ଥାନ :—

**ପୁସ୍ତକ ଭଣ୍ଡାର**
ବ୍ରହ୍ମପୁର-୧ ଓ କଟକ-୨

**ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ**
କଟକ-୨

**ବୁକ୍ସ୍ ଇଣ୍ଟରନେସନାଲ୍**
କଟକ-୨

**ସାରସ୍ୱତ ନିଳୟ**
ଛତାବଜାର, କଟକ-୧୨

# ସଂପାଦକୀୟ

ମାନବ-ସଭ୍ୟତାର ଇତିହାସରେ ଉତ୍କୃଷ୍ଟ ଗ୍ରନ୍ଥର ଗୁରୁତ୍ୱ ସର୍ବଦା ସ୍ୱୀକୃତ ହୋଇ ଆସିଛି । କେହି କେହି ଏହାକୁ ମଣିଷର 'ଜୀବନ ବେଦ' କହୁଥିଲା-ବେଳେ ଆଉ କେହି କେହି କହୁଛନ୍ତି—'ଶୋଷିତ ସମାଜର ଅମୋଘ ଅସ୍ତ୍ର' । କିନ୍ତୁ ଉତ୍କୃଷ୍ଟ ଗ୍ରନ୍ଥର ରଚନା ତଥା ପ୍ରକାଶ ପ୍ରାୟ ସର୍ବତ୍ର ସୀମାବଦ୍ଧ । ସେଥିପାଇଁ ବିଭିନ୍ନ ସାଂସ୍କୃତିକ ସଂସ୍ଥା ଓ ସାରସ୍ୱତ ଅନୁଷ୍ଠାନ, ବହୁବିଧ କାର୍ଯ୍ୟକ୍ରମ ମଧ୍ୟରେ ଉତ୍କୃଷ୍ଟ ଗ୍ରନ୍ଥରଚନାପାଇଁ ଲେଖକମାନଙ୍କୁ ଉତ୍ସାହିତ କରିବା ଏବଂ ସେହିଭଳି ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ବହନ କରିବାର କାର୍ଯ୍ୟକ୍ରମ ଗ୍ରହଣ କରିଥାଆନ୍ତି । 'ଓଡ଼ିଆ ଗବେଷଣା ପରିଷଦ' ମଧ୍ୟ ନିଜର ବିଭିନ୍ନ ଉଦ୍ଦେଶ୍ୟ ମଧ୍ୟରେ 'ପ୍ରକାଶ-ଯୋଗ୍ୟ ନୂତନ / ପୁରାତନ ଓଡ଼ିଆ ଗ୍ରନ୍ଥର ସଂଗ୍ରହ ଓ ମୁଦ୍ରଣ' ଉଦ୍ଦେଶ୍ୟ ସ୍ଥିର କରିଛି ।

'ଓଡ଼ିଆ ଗବେଷଣା ପରିଷଦ'ର ଦ୍ୱିତୀୟ ପ୍ରକାଶନ ରୂପେ ଏହି 'ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା' ଆମେ ଆଜି ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛୁଁ । ପରିଷଦର ପ୍ରଥମ ବାର୍ଷିକ ଉତ୍ସବରେ ଗତ ୨୫ । ୧୦ । ୧୯୮୧ ତାରିଖରେ ଏହି ଗ୍ରନ୍ଥର ପ୍ରବନ୍ଧାବଳୀ ଏକ ଉଚ୍ଚକୋଟୀର ସଂପାନରେ ଉପସ୍ଥାପିତ କରାଯାଇଥିଲା । ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ରାଜ୍ୟରେ ଏହା ଏକ ନୂତନ ଉଦ୍ୟମ । ପୃଥିବୀରେ ଅନ୍ୟତ୍ର ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା ରୀତିର ଦୃଷ୍ଟାନ୍ତ ମିଳୁଥିଲେ ମଧ୍ୟ ଭାରତୀୟ ତଥା ଓଡ଼ିଆ ସାହିତ୍ୟ ଏହି ଦିଗଟିକୁ କିପରି ସ୍ପର୍ଶ କରିଛି, ତାହାର କଳନା ଆମେ ଏଯାବତ୍ କରିନାହୁଁ । ଏହି ସଂପାନରେ ଅନୁରୂପ କଳନାପାଇଁ ଏକ ପୃଥକ୍କୃତ ପ୍ରଚେଷ୍ଟା ହୋଇଅଛି । ସନ୍ନିବେଶିତ ପ୍ରବନ୍ଧଗୁଡ଼ିକରୁ ତଥା ଗ୍ରନ୍ଥ ଶେଷରେ ପ୍ରଦତ୍ତ ସଂପାନର ସଂକ୍ଷିପ୍ତ ବିବରଣୀରୁ ବିଜ୍ଞ ସହୃଦୟ ପାଠକମାନେ ଏହା ଉପଲବ୍ଧି କରି

ପାରିବେ । ଆମର ସାହିତ୍ୟ-ଚର୍ଚ୍ଚା କ୍ଷେତ୍ରରେ ଏହି ନୂତନ ଉଦ୍ୟମର ଫଳଶ୍ରୁତିକୁ ରାଜ୍ୟର ସୁଧୀ ସଜ୍ଜନମଣ୍ଡଳୀ ସାଦର ଗ୍ରହଣ କରିବେ ବୋଲି ଆଶା କରୁଛୁଁ ।

ରାଜ୍ୟ ତଥା ରାଜ୍ୟ ବାହାରର ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ପଣ୍ଡିତ ଗବେଷକ ଓ ସମାଲୋଚକଗଣ ଏହି ସଂପାଦନରେ ଲିଖିତ ପ୍ରବନ୍ଧ ତଥା ମୌଳିକ ଆଲୋଚନା ମାଧ୍ୟମରେ ଅଂଶଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ ଡକ୍ଟର ନରେନ୍ଦ୍ରନାଥ ମିଶ୍ର, ଶ୍ରୀ ଚନ୍ଦ୍ରରଞ୍ଜନ ଦାସ, ଡକ୍ଟର ଅନନ୍ତଚରଣ ଶୁକ୍ଳ, ଅଧ୍ୟାପକ ଅଭିନ୍ନଚନ୍ଦ୍ର ସାହୁ, ପ୍ରଫେସର ଶ୍ରୀ ପ୍ରହ୍ଲାଦ ପ୍ରଧାନ, ଲୋକରତ୍ନ ଡକ୍ଟର କୃଷ୍ଣବିହାରୀ ଦାଶ, ଡକ୍ଟର ହେମନ୍ତକୁମାର ଦାସ, ଡକ୍ଟର ରତ୍ନାକର ଚଇନି, ଅଧ୍ୟାପକ ହୃଷୀକେଶ ମଲ୍ଲିକ, ଅଧ୍ୟାପକ ବନମାଳୀ ବାରିକ, ଅଧ୍ୟାପକ ଗୌରହରି ମହାନ୍ତି, ଶ୍ରୀ ସୁଧୀରଚନ୍ଦ୍ର ବେହୁରା, ଶ୍ରୀ ଶୈଳଜ ରବି ପ୍ରମୁଖ ପ୍ରଧାନ । ସେମାନଙ୍କ ପ୍ରତି ପରିଷଦ ତରଫରୁ ଆନ୍ତରିକ ସାଧୁବାଦ ଜ୍ଞାପନ କରୁଛୁ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏହି ସଂସ୍ଥାନ ସକାଶେ ଅର୍ଥ-ସାହାଯ୍ୟ ପ୍ରଦାନ ପୂର୍ବକ ବିଶେଷ ପୃଷ୍ଠପୋଷକତା ପ୍ରଦର୍ଶନ କରିଥିବାରୁ ଆମେ ଏକାଡେମୀର କର୍ତ୍ତୃପକ୍ଷଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରୁଛୁଁ ।

। ଇତି ।

ମାର୍ଚ୍ଚ ୭, ୧୯୮୨
ସାରସ୍ୱତ ନିକେତନ
ଛତିବଜାର, କଟକ—୧୨

**କ୍ଷେତ୍ରବାସୀ ନାୟକ**
ସଂପାଦକ
ଓଡ଼ିଆ ଗବେଷଣା ପରିଷଦ

## 'ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷା ବିଷୟକ ସଂପାନ

କଟକ ଶ୍ରୀରାମଚନ୍ଦ୍ର ଭବନ : ୨୫।୧୦।୧୯୮୧



ପ୍ରବନ୍ଧ-ପାଠକ ବୃନ୍ଦ : ( ଯଥାକ୍ରମେ ବାମ ପାର୍ଶ୍ୱରୁ ) ଅଧ୍ୟାପକ ଶ୍ରୀ ଅଭିନ୍ନଚନ୍ଦ୍ର ପାତ୍ର, ଡକ୍ଟର ଶ୍ରୀ ନରେନ୍ଦ୍ର ନାଥ ମିଶ୍ର, ଡକ୍ଟର ଶ୍ରୀ ଅନନ୍ତ ଚରଣ ଶୁକ୍ଳ ଓ ଶ୍ରୀ ଜୀବନରଞ୍ଜନ ଦାସ

"ଚୁମ୍ବନ-ବଂଚିତ ପ୍ରେମିକଙ୍କ ଶୋକ-ଗୀତି ଗାନ ଭଳି ଅକ୍ଷମ କବିଙ୍କର ସମାଲୋଚନା" ଅତୃପ୍ତି ଓ କାରୁଣ୍ୟରେ ହୃଦୟକୁ ସ୍ପର୍ଶ କରେ । ହୁଏତ ଏହା ହିଁ କଳାତ୍ମକ ସମାଲୋଚନା । କବି ସମୀକ୍ଷକ ହିଁ ଥିଲେ ଆଦ୍ୟ ସମୀକ୍ଷକ । ନ ଥିଲା ତାଙ୍କର ଆତ୍ମପ୍ରୀତି ସ୍ପର୍ଦ୍ଧା । ନିର୍ଲିପ୍ତ, ଉଦାର, ଅହଂବର୍ଜିତ, ବିନୟୋକ୍ତି, ସାଧୁବୃତ୍ତି, ଖଳନିନ୍ଦା ଓ ଇଷ୍ଟ ଦେବତାଙ୍କର ମହିମ୍ନ ରଚନାରେ ଏହାର ପ୍ରତିଛବି ହୋଇଉଠୁଥିଲା ଚିରସ୍ମୃତ, କଳାଶ୍ରୀ-ମଣ୍ଡିତ । ବସ୍ତୁତଃ ପ୍ରାଚୀନ କାଳରେ ଜଣେ ବ୍ୟକ୍ତି କେବଳ ଗ୍ରନ୍ଥକର୍ତ୍ତା ନ ଥିଲେ । ଗୁରୁକୈନ୍ଦ୍ରିକ ଅନୁଷ୍ଠାନ, ଆଶ୍ରମ-ପ୍ରଭବ ଜୀବନଧାରା ଓ ସହଯୋଗୀ ସମବେତ ଚର୍ଚ୍ଚାର ପରିମଣ୍ଡଳରୁ ଗ୍ରନ୍ଥବିଶେଷର ସୃଷ୍ଟି ହେଉଥିଲା । ଏକ ସାଧାରଣ ଭାଣ୍ଡାର ଭିତ୍ତିରେ ଆହୃତ ଉପାଦାନ ଓ ଜୀବନ୍ତ ଅନୁଭୂତି ରସରେ କବିତାର ପ୍ରତି ପଙ୍‌କ୍ତି ଜୀବନ୍ତ ହୋଇଉଠୁଥିଲା । କବିତାର ସଞ୍ଚରଣ ଭୂମି ଥିଲା ଶଙ୍କାବର୍ଜିତ ଆନନ୍ଦ ଆଲୋକିତ ହୃଦୟ ଭୂମି । ପ୍ରାକ୍‌ଲିପି ଯୁଗରେ ଏହାର ମୂର୍ତ୍ତି ମାନବ ହୃଦୟ ଭୂମିରେ ହିଁ ଜୀବନ୍ତ ହୋଇ ଉଠୁଥିଲା ।

ମନୁଷ୍ୟ ମରଣଶୀଳ । କ୍ଷୟଶୀଳ ତାର ସମସ୍ତ ସୃଷ୍ଟି । ମାତ୍ର ପ୍ରାଣର ପରମ ଭାବ-ସମ୍ପଦକୁ ଶାଶ୍ୱତ ସ୍ଥିତି ଦେବାପାଇଁ ସେ ଗଢ଼ିଲା ଲିପି । ଲିପିର ରଚନା ମାଧ୍ୟମ ଥିଲା କେତେବେଳେ ପ୍ରସ୍ତର ଓ କେତେବେଳେ ଧାତୁ ଫଳକ ଅଥବା ମୃତ୍ତିକା ଫଳକ । ଏହି ସବୁ ଥିଲା ସର୍ବସାଧାରଣର ସମ୍ପଦ । ଏହାକୁ ଏକ ସ୍ଥାନରୁ ଅନ୍ୟସ୍ଥାନକୁ ବହନକରିବା ଥିଲା ଆୟାସସାଧ୍ୟ । ବୃକ୍ଷର ବଲ୍‌କଲ, ପଠ ବୃକ୍ଷର ପତ୍ର, ଚମଡ଼ାକୁ ଲେଖନର ମାଧ୍ୟମ ଭାବରେ ବ୍ୟବହାର କରି ପୁସ୍ତକ ଲିଖିତ ହେଉଥିଲା । ଏହା ହେଲା ବ୍ୟକ୍ତିର ସମ୍ପଦ ।

ମଧ୍ୟଯୁଗର ୟୁରୋପରେ ଶିଷ୍ୟବର୍ଗ ଗୁରୁ ବା କବିଙ୍କର ମୁଖ-ନିଃସୃତ ବାଣୀ ଗୋଟିଏ ସପ୍ତାହ ଧରି ଶୁଣୁଥିଲେ ଓ ଗୋଟିଏ ଦିନ ଶିଷ୍ୟବର୍ଗ ଏକତ୍ର ବସି ନିଜେ ନିଜ ଲବ୍ଧ ଜ୍ଞାନକୁ ପାର୍ଚମେଣ୍ଟରେ ଲେଖୁଥିଲେ । ଏହି ଭିତରେ ମହାନ୍ କବି, ସାଧକଙ୍କର ମାନସ-ସୃଷ୍ଟି ସେହି ମହାଗ୍ରନ୍ଥମାନ ରଚିତ ହେଉଥିଲା । ଆମ ଦେଶରେ ମୃତ୍ୟୁ ପରେ ବୁଦ୍ଧଙ୍କର ବାଣୀ ଗ୍ରନ୍ଥାକାରରେ ସଂକଳିତ ହୋଇଥିଲା । ଶାରଳା, ବଳରାମଙ୍କ ମହାଗ୍ରନ୍ଥମାନ ହୁଏତ ଏହି ରୀତିରେ ସମସ୍ତ କ୍ରମେ ସଂକଳିତ ହୋଇଥିଲା । ଏକ ବିଶ୍ୱାସ, ଏକ ଜୀବନ୍ତ ଝିବ ଓ ଏକ ସମବେତ ଜିଜ୍ଞାସୁ ଏକାଗ୍ରଚିତ୍ତ ଶିଷ୍ୟମଣ୍ଡଳୀର ସମବେତ ପ୍ରାଣ-ଶକ୍ତି ଏହି ରଚନାରେ ପ୍ରକାଶ ପାଉଥିଲା ଓ ଯୁଗ ଯୁଗ ଧରି ଶ୍ରୋତା ଓ ବକ୍ତାଙ୍କର ମନୋଭୂମିରେ ଏହା ଜୀବନ୍ୟାସ ଲାଭ କରିଥିଲା । "ପଣ୍ଡିତଲୋକେ ବୋଲିବେ ଏ ସତ୍ୟ ବାରତା, ମୂର୍ଖ ଲୋକେ କହିବେ ସ୍ୱେ ବଣ୍ଡିତର ଲତା ।" ଏଇଭଳି ଉକ୍ତି ମଧ୍ୟରେ ଆଦ୍ୟ ସମୀକ୍ଷକ କବି ନିଜ ଉଜ୍ଜ୍ୱଳ ବିଶ୍ୱାସର ମହତ୍ତ୍ୱ ପ୍ରଚାର କରୁଥିଲେ ଓ ନିଜ ଇଷ୍ଟଦେବଙ୍କର ବାଣୀ ରୂପେ ନିଜ ଗ୍ରନ୍ଥକୁ ପ୍ରଚାର କରୁଥିଲେ । ଏମାନଙ୍କ ସମୀକ୍ଷା ଥିଲା ସୃଷ୍ଟିର ଏକ ଅଙ୍ଗ । ଏହି ସାହିତ୍ୟର ଅବବୋଧ ପାଇଁ ସେକାଳରେ ସ୍ୱତନ୍ତ୍ର ସମୀକ୍ଷାର ଆବଶ୍ୟକତା ନ ଥିଲା । ଦେଶ କାଳର ବ୍ୟବଧାନ, ବିଶ୍ୱାସ ସ୍ଥାନରେ ସଂଶୟ, ଆଗ୍ରହ-ପ୍ରଭବ ଜୀବନଚର୍ଯ୍ୟା ସ୍ଥାନରେ ବ୍ୟକ୍ତିଗତ ରୁଚି, ଅନୁଭୂତିସିଦ୍ଧ ଜ୍ଞାନ ସ୍ଥାନରେ ଅପରୋକ୍ଷ ଅନୁଭୂତି-ସଂଜାତ ବିଚିତ୍ର ତଥ୍ୟର ବନ୍ଧୁର ଭୂମିରେ ପ୍ରତିଷ୍ଠିତ, ଖଣ୍ଡିତ, ଶାଖାୟିତ ଜ୍ଞାନର ପ୍ରତିଷ୍ଠା ଏ ସବୁ ସୃଷ୍ଟିର ଜୀବନ୍ତ ପରିବେଶରୁ ଆଧୁନିକ ପାଠକକୁ ଏକ ନିଃସଙ୍ଗ, ଅଜ୍ଞେୟ, ନିରାକାର ଘୂର୍ଣ୍ଣି ମଧ୍ୟରେ ନିକ୍ଷେପ କରିଅଛି । ପଥ ସନ୍ଧାନ ପାଇଁ ସେ ସମାଲୋଚକଙ୍କର ଅନୁଗ୍ରହ ପ୍ରାର୍ଥୀ ।

ସୃଷ୍ଟି ଏକ ଉଦ୍‌ଭାବନ । ସମୀକ୍ଷା ନିଃସନ୍ଦେହରେ ଏକ ଆବିଷ୍କାର । ଦୁଃସାହସିକ, ରୋମାଂଚକର ଅନୁଭୂତିର ସଦ୍ୟ ଓ ସ୍ୱଚ୍ଛ ଉପଲବ୍ଧି ଥାଏ ସମୀକ୍ଷକଙ୍କର । ଏଇ ଅନୁଭୂତିର ଆନନ୍ଦ, ଏଇ ଅଭିଜ୍ଞତାର ଆଲୋକ ସେ ପରିବେଷଣ କରନ୍ତି ଅଳ୍ପ ଭାଗ୍ୟବାନ୍ ପାଠକଙ୍କ ପାଇଁ । ମାତ୍ର ଏ ପରିବେଷଣ କଳାରାଜ୍ୟର ହୁଏତ ସମୀପବର୍ତ୍ତୀ ହୋଇପାରେ, ମାତ୍ର ଅବାଧରେ ତାର

ସିଂହାସନ ଆରୂଢ଼ ହୋଇ ପରେ କି ? ସମାଲୋଚନା ଯଦି କେବେ ସୃଷ୍ଟି-
ଧର୍ମୀ ହୁଏ, ହୋଇପାରେ ତାହା ଅନ୍ୟ ଏକ କଳାସୃଷ୍ଟି, ସମୀକ୍ଷା ଧର୍ମରୁ
ବଂଚିତ । କଳା ଓ କବିତାର ଲକ୍ଷ୍ୟ ହୃଦୟବୃତ୍ତିକୁ ଉଦ୍‌ବେଳିତ କରିବା ।
କିନ୍ତୁ ସମାଲୋଚନାର ଲକ୍ଷ୍ୟ ବୁଦ୍ଧିକୁ ତୃପ୍ତ କରିବା । କଳାର ଲକ୍ଷ୍ୟ ଭୋକ୍ତାର
ଅନୁଭୂତି ସଂଗେ ଆତ୍ମୀୟତା ସ୍ଥାପନ । ମାତ୍ର ସମୀକ୍ଷାର ଉଦ୍ଦେଶ୍ୟ ପାଠକର
ଅଭିରୁଚିକୁ ଉନ୍ନତ ଓ ମାର୍ଜିତ କରିବା, କଳାର ରସ ଗ୍ରହଣ ପାଇଁ ପ୍ରସ୍ତୁତ
କରିବା । ଯଦି ସମୀକ୍ଷା କଳାଧର୍ମୀ ହୁଏ, ତେବେ ଏକ ମହାନ୍ ସୃଷ୍ଟିର ତାହା
ହେବ ଏକ ପୁନଃସୃଷ୍ଟି । ଏ ସୃଷ୍ଟି ହେବ ଏକ ଅନୁକରଣକାରୀର । ଅନୁ-
କରଣରେ ନା ଫୁଟିବ ସ୍ୱାଭାବିକତା, ନା ମିଳିବ ମୌଳିକତା । ସୃଷ୍ଟିଧର୍ମୀ
ସମୀକ୍ଷା ସୃଷ୍ଟିରାଜ୍ୟରୁ ହେବ ବଂଚିତ ଓ ଜ୍ଞାନରାଜ୍ୟରେ ହେବ ଅପାଂକ୍ତେୟ ।

ଆଜି ହୁଏତ କବି, ଆଦି ସମୀକ୍ଷକ ନୁହନ୍ତି । ତେବେ କବି ସମୀକ୍ଷକଙ୍କର
ଅଭାବ ନାହିଁ । ଅବାରିତ ସୃଷ୍ଟି ଓ ଅନର୍ଗଳ ସୃଷ୍ଟି ଏକା କଥା ନୁହେଁ । ଘୋର
ଦୁର୍ଦ୍ଦିନର ନିଷ୍ପେଷଣରେ ବେଳେବେଳେ ପ୍ରାଣରସ ଶୁଖିଗଲା ଭଳି ସ୍ରଷ୍ଟା-
ହୃଦୟରୁ ସୃଷ୍ଟିର ଉତ୍ସମୁଖ ଶୁଷ୍କ ହୋଇଯାଏ । ସେତେବେଳେ ସେ ଅତୀତକୁ
ଫେରି ଚାହାଁନ୍ତି । ସୃଷ୍ଟିର ଏହି ବିରତି କାଳରେ ଅତୀତ ସୃଷ୍ଟିର ପଙ୍କ୍ତାନୁପଙ୍କ୍ତି
ସବୁ ତାଙ୍କ ସ୍ମୃତିରେ ଜୀବନ୍ତ ହୋଇଉଠେ । ଦୁଃଖ ଦିନରେ ବିଗତ ଦିନର
ସ୍ମୃତି ଅଥବା ନିଃସଂଗ ମୁହୂର୍ତ୍ତରେ ପ୍ରାଣପ୍ରିୟ ବନ୍ଧୁଜନର ମାନସ ସଂଗ ବନ୍ଧ୍ୟ
ଶୁଷ୍କ ରସଧାରାର ଅଭିବ୍ୟକ୍ତି ଘଟିପାରେ ଏକ ପ୍ରକାର ସମୀକ୍ଷା ମଧ୍ୟରେ ।
ଏଥିରେ ଥାଏ ନିଜ ସୃଷ୍ଟିର ପୁନର୍ମୂଲ୍ୟାୟନ, ସମଗୋଷ୍ଠୀ ବନ୍ଧୁଙ୍କ ସୃଷ୍ଟିର
ପ୍ରଶଂସା ଓ କେତେବେଳେ ଅବା ଭିନ୍ନ ପନ୍ଥୀ ସ୍ରଷ୍ଟାଙ୍କର ବିରୂପ ସମାଲୋଚନା ।
ସ୍ରଷ୍ଟା ଶବ୍ଦର ଉପାଦାନରେ ଚିରଚଂଚଳ ଅନୁଭୂତିର ଅରୂପ ଭାବସତ୍ତାକୁ
ସ୍ଥାୟିତ୍ୱ ଦାନ କରିବା ଲକ୍ଷ୍ୟରେ ରଚନା କରନ୍ତି ନିଜ ସୃଷ୍ଟିର ଜଗତ ।
ଏହା ପ୍ରତ୍ୟକ୍ଷ ଅନୁଭୂତି-ସଂଜାତ ସୃଷ୍ଟି ହେଉ, ଅଥବା ବ୍ୟକ୍ତିଗତ ଧାରଣା
କଳ୍ପିତ ସମୀକ୍ଷା ହେଉ—ଏଥିରେ ଥାଏ ନିଜସ୍ୱ ରଚନାଭଙ୍ଗୀ । ଏସବୁ
ସମୀକ୍ଷା ସୁଖପାଠ୍ୟ, ଏକ ଏକ ମୌଳିକ ସୃଷ୍ଟି ପ୍ରତି ବିରାଗ ବା ଅନୁରାଗ
ସୃଷ୍ଟି ପାଇଁ ଯଥେଷ୍ଟ ଶକ୍ତିଶାଳୀ । ଯେଉଁଠି ଏହି ସୃଷ୍ଟିଶୀଳ ସମୀକ୍ଷାର ପ୍ରତିଷ୍ଠା

ସେଠାରେ ସାହିତ୍ୟ ବିଦ୍ୟାର ବିକାଶ ପାଇଁ ଅନୁକୂଳ ପରିବେଶ ମିଳିବା ଦୁଷ୍କର ।

ସାହିତ୍ୟ-ବିଦ୍ୟା ବିକାଶର ଏକ ନିଜସ୍ୱ ଧାରା ବିଦ୍ୟମାନ । ବିଜ୍ଞାନ ଓ ମାନବବିଦ୍ୟା ଉଭୟର ପଦ୍ଧତି ଏହା ଗ୍ରହଣ କରେ । ବିଜ୍ଞାନ ଭଳି ପ୍ରକୃତି ଜଗତର ନ ହେଲେ ବି ମନୁଷ୍ୟର ଅନ୍ତର୍ଜଗତରେ ନିତ୍ୟ ନିୟତ ସଂଘଟିତ ଘଟଣାବଳୀର ବ୍ୟାଖ୍ୟା ପାଇଁ ଏହା ଚେଷ୍ଟା କରେ; ଉପନୀତ ହୁଏ ସାଧାରଣ ସିଦ୍ଧାନ୍ତରେ । ତଥ୍ୟର ସଂଗ୍ରହ, ସମୀକରଣ, ଶ୍ରେଣୀକରଣ, ବିଶ୍ଳେଷଣ ଭିତ୍ତିରେ ରଚିତ ହୁଏ ଏକ ସାଧାରଣ ସୂତ୍ର । ପ୍ରକୃତି, ପରିବେଶ ଓ ଜୀବନର ମାର୍ଗ ନିର୍ଦ୍ଦେଶ ପାଇଁ ଏହି ସୂତ୍ର ମୂଲ୍ୟବାନ । ବୈଜ୍ଞାନିକ ସୂତ୍ରଭଳି ଏକାନ୍ତ ନିର୍ଲିପ୍ତ ନିରାସକ୍ତ ନିର୍ଭୁଲ ନ ହେଲେ ବି ସାହିତ୍ୟର କେତେକ ସାଧାରଣ ସୂତ୍ର ଓ ବିଶିଷ୍ଟ ସଜ୍ଞାର ମୂଲ୍ୟ ସ୍ୱୀକୃତ । ବୈଜ୍ଞାନିକ ପଦ୍ଧତି, ଶୈଳୀ-ବିଦ୍ୟା, ଛନ୍ଦତତ୍ତ୍ୱ, ପ୍ରାଚୀନ ରଚନାର କାଳ ନିରୂପଣ, ଖଣ୍ଡିତ ରଚନାର ପୁନର୍ଗଠନ ଆଦି ପାଇଁ ଏକାନ୍ତ ଉପଯୁକ୍ତ । ଏହି ବୈଜ୍ଞାନିକ ସମୀକ୍ଷାର ପକ୍ଷପାତୀମାନେ ନିର୍ଦ୍ଦିଷ୍ଟ ଭାବରେ ନିଜ ସମୀକ୍ଷାକୁ ସୃଷ୍ଟିଧର୍ମୀ କହିବେ ନାହିଁ । ସେମାନେ ସୃଷ୍ଟିର ପୁନର୍ସୃଷ୍ଟିକୁ ଅବାନ୍ତର ମନେ କରନ୍ତି । ସୃଷ୍ଟିର ନେପଥ୍ୟରେ ଥିବା ରହସ୍ୟର ମର୍ମଭେଦ କରିବା ଓ ସୃଷ୍ଟିର ଅନ୍ତର୍ନିହିତ ରସ ଧାରାକୁ ସ୍ୱକାଳ ତଥା ଭବିଷ୍ୟତର ପାଠକଙ୍କ ପାଇଁ ଚିର ପ୍ରବାହିତ ରଖିବା ଏମାନଙ୍କର କାମ୍ୟ ।

ଆଧୁନିକ ମନ ସ୍ୱତଃ ବିସ୍ଫୁରଣଶୀଳ । ସବୁ କଥାରେ ସେ ଖୋଜେ ନିଥି, ସାରଣୀ, ସୂଚୀ । ଏହି ଦୃଷ୍ଟିରୁ ବୈଜ୍ଞାନିକ ପଦ୍ଧତି-ନିର୍ଭର ସମାଲୋଚନା ଏକାନ୍ତଭାବେ ଆଧୁନିକ ମନ ଓ ମନନର ସଙ୍ଗୀ । ବୈଜ୍ଞାନିକ ପଦ୍ଧତି-ନିର୍ଭର ସମାଲୋଚନାର ବିକାଶ ବ୍ୟକ୍ତିକେନ୍ଦ୍ରିକ ନୁହେଁ, ଅନୁଷ୍ଠାନଭିତ୍ତିକ । ଅନୁଷ୍ଠାନ ସମସ୍ତ ପ୍ରସ୍ତବରେ ସଙ୍କୁଚିତ ହୁଏନାହିଁ । ଜୀର୍ଣ୍ଣ ହୁଏନାହିଁ । ସଂଗଠନର ବଳିଷ୍ଠ ଭିତ୍ତି ଥିଲେ ଏହାର ପ୍ରଭାବ ଓ ପ୍ରତିଷ୍ଠା ହୋଇପାରେ ଦେଶକାଳାତୀତ । ଆଜିର ପ୍ରଧାନ ସମସ୍ୟା ଆଞ୍ଚଳିକତାକୁ ସର୍ବପାର୍ଥିବ ଓ ସାର୍ବଜନୀନ କରିବା

ତଥା ଯାହା କିଛି ସାର୍ବଜନୀନ ସାର୍ବଭୌମିକ ଓ ସାର୍ବସ୍ତୁଥିବାର ସମ୍ପଦ, ତାକୁ ବ୍ୟକ୍ତି, ଗୋଷ୍ଠୀ, ଏକ ଆଞ୍ଚଳିକ ସମାଜ, ଏକ ଖଣ୍ଡାଂଶୀ ଜନସାଧାରଣ ସମୂହଙ୍କ ନିଜସ୍ୱ ସମ୍ପଦରେ ପରିଣତ କରିବା । ଏହିସ୍ଥାନରେ ସାଧୁ ନିତ୍ୟ ଯେଉଁଠି ବିହାର କରେ, ସେଇଠି ଆମର ଯୋଗ । ସେଦିନ ସାଧନାର ସ୍ଥଳ ଥିଲା ଗୁମ୍ଫାର କୋଣ, ଅରଣ୍ୟ ବା ଶ୍ମଶାନ । ଆଜିର ସାଧନାର ପୀଠ, ଜ୍ଞାନର ପ୍ରକୋଷ୍ଠ ଗ୍ରନ୍ଥାଗାର ବା ବିଶ୍ୱବିଦ୍ୟାୟତନ । ବାହାର ଜଗତର ବିପୁଳ ଅଭିଜ୍ଞତା ଯେଉଁ କେନ୍ଦ୍ର ସ୍ରଷ୍ଟା ସାମୟିକ ବ୍ରହ୍ମଚର୍ଯ୍ୟ ପାଳନ କରିପାରନ୍ତି ଏଠାରେ । ଆଉ ଅନ୍ତେବାସୀମାନେ ବାଢ଼ି ପାରନ୍ତି ତାଙ୍କପାଇଁ ବିନମ୍ର ପ୍ରଣତି । ମାତ୍ର ବିଦ୍ୟାସାଧନ-ନିରତ ଅନ୍ତେବାସୀମାନେ ଏହି ସ୍ରଷ୍ଟାଙ୍କୁ କେବେ ନିଜ ବିଦ୍ୟାମନ୍ଦିରର ସିଂହାସନରେ ଅଭିଷିକ୍ତ କରିବେ ନାହିଁ ।

ସାହିତ୍ୟ ସୃଷ୍ଟି ବହୁ ପୁରାତନ । ସାହିତ୍ୟବିଦ୍ୟା ଏକାନ୍ତ ଅର୍ବାଚୀନ । ହୁଏତ ସୃଷ୍ଟି ବିନା ଏ ବିଦ୍ୟାର ସ୍ଥିତି ଅକଳ୍ପନୀୟ । ଏଇ ବିଂଶ ଶତକରେ ପାଶ୍ଚାତ୍ୟ-ବିଦ୍ୱାନ୍‌ର ନିଷ୍କ୍ରମଣର ବନ୍ଧ୍ୟା ଭୂମିରେ ବହୁ ଯତ୍ନରେ ସାହିତ୍ୟବିଦ୍ୟାର ବୀଜ ଉପ୍ତ ହୋଇ ଏହା ଏବେ କେଉଁଠି କେମିତି କ୍ଷୁଦ୍ର ବୃକ୍ଷଗଛରେ ପରିଣତ ହୋଇଛି । ଆମ ଦେଶର ପ୍ରତିକୂଳ ଜଳବାୟୁରେ ଏବେ ବି ଏହା ଅଙ୍କୁର ରୂପରେ ବିଦ୍ୟମାନ । ସବୁମତେ ଏହାର ବିକାଶପାଇଁ ଅନୁକୂଳ ପରିବେଶ ସୃଷ୍ଟି ପ୍ରୟୋଜନ । ସର୍ଜନଶୀଳ ସମାଲୋଚନାପାଇଁ ସ୍ରଷ୍ଟାହୃଦୟର ତଦାତ୍ମ୍ୟ-ବୋଧ ଓ ଉଦ୍‌ବେଳନ ହିଁ ଯଥେଷ୍ଟ । ବାହାରର ପୃଷ୍ଠପୋଷକତା ଯଦି ଏହା ଲୋଡ଼େ, ତେବେ ତାହା ଏକ ସାମୟିକ ପ୍ରୟୋଜନ ମାତ୍ର । ମାତ୍ର ସାହିତ୍ୟ-ବିଦ୍ୟାର ବିକାଶ ପାଇଁ ପ୍ରଥମତଃ ପ୍ରୟୋଜନ ନିର୍ଭୁଲ ତଥ୍ୟ । ନଥି ସଂଗ୍ରହ ଓ ସଂରକ୍ଷଣ ପ୍ରୟୋଜନ । ଏସବୁର ବିନିଯୋଗ ପାଇଁ ପୁଣି ବହୁତ ବିଶେଷଜ୍ଞଙ୍କ ପ୍ରୟୋଜନ । ଭିନ୍ନ ଭିନ୍ନ ଜ୍ଞାନଶାଖାରେ ଅଭିଜ୍ଞ ବିଶେଷଜ୍ଞଙ୍କ ମାନଙ୍କର ମିଳିତ ପ୍ରୟାସ ଭିତ୍ତିରେ ଏହି ବିଦ୍ୟାର ପ୍ରତିଷ୍ଠା ଓ ବିକାଶ ସମ୍ଭବ ।

ସୃଷ୍ଟିଧର୍ମୀ ସମୀକ୍ଷା ବହୁ ସ୍ରଷ୍ଟାଙ୍କର ପ୍ରଜ୍ଞାରେ ବିଭୂଷିତ ଓ ସାରସ୍ୱତ ପ୍ରତିଭାରେ ଦୀପ୍ତ । ମାତ୍ର ସାହିତ୍ୟବିଦ୍ୟାର ଛାତ୍ରମାନଙ୍କ ପାଇଁ ଏହା କେବଳ

ଅଭିପ୍ରେତ ନୁହେଁ । ହୁଏତ ସବୁ ସ୍ତରର ପାଠକଙ୍କ ପାଇଁ ଏହାର ଆବେଦନ ସୁଦୂରପ୍ରସାରୀ । ସାହିତ୍ୟର ଜଗତ୍ ରସର ଜଗତ୍ । ସେଥିରେ ଅବଗାହନର ଅଧିକାର ସକଳର । ଆମେ ବି ସୃଷ୍ଟିଧର୍ମୀ ସମୀକ୍ଷାକୁ ଶ୍ରଦ୍ଧା କରୁ । ମାତ୍ର ସାହିତ୍ୟବିଦ୍ୟା ଗ୍ରନ୍ଥମାନଙ୍କର ସମବେତତନ୍ତ୍ରୀ ସୃଷ୍ଟିଧର୍ମୀ ସମୀକ୍ଷାରେ ସମାହିତ ହେବା ପରିବର୍ତ୍ତେ ନିଜସ୍ୱ ପଥରେ ପରିଚାଳିତ ହେବା ପ୍ରୟୋଜନ । ଯଦି ଆମେ ସୃଷ୍ଟିଧର୍ମୀ ସମୀକ୍ଷାର ଦୂରକୁ ଯାଇ ନ ପାରୁ ତେବେ ଆମକୁ ସାହିତ୍ୟ-ବିଦ୍ୟା ଗ୍ରନ୍ଥ ସାହିତ୍ୟ ସୃଷ୍ଟିରେ ହିଁ ପ୍ରୟାସୀ ହେବାକୁ ପଡ଼ିବ ।

ପ୍ରସ୍ତାବର ଆସନ ସର୍ବାଗ୍ରେ । ମାତ୍ର ସୃଷ୍ଟିର ସାଧନାର ଦ୍ୱାର ସମସ୍ତଙ୍କ ପାଇଁ ମୁକ୍ତ ନୁହେଁ । ସାହିତ୍ୟବିଦ୍ୟାର ଦ୍ୱାର ଅନୁସନ୍ଧିତ୍ସୁ ଆଗ୍ରହୀ ଛାତ୍ର ସମସ୍ତଙ୍କ ପାଇଁ ମୁକ୍ତ । ଯଦି ସୃଷ୍ଟିଧର୍ମୀ ସମାଲୋଚନା ସାହିତ୍ୟ ବିଦ୍ୟା ରାଜ୍ୟକୁ ସଂସୀମିତ କରେ, ତେବେ ସାହିତ୍ୟବିଦ୍ୟା ରାଜ୍ୟରେ ପ୍ରବେଶକୁ କଠୋର ଭାବରେ ନିୟନ୍ତ୍ରଣ କରିବାକୁ ପଡ଼ିବ । ସୃଷ୍ଟିର ଅନ୍ୟ ଏକ ଉପାଦାନ-ଅନୁଭୂତିର ଗଭୀରତା ଓ ପ୍ରଶସ୍ତତା । ବୟୀୟାନ ନ ହେଲେ ଅନୁଭୂତିର ଏହି ଗଭୀରତା ପ୍ରଶସ୍ତତା ଲାଭ ସମ୍ଭବ ନୁହେଁ । ତା ଯଦି ହୁଏ, ସାହିତ୍ୟ-ବିଦ୍ୟା ଶିକ୍ଷାୟତନ ପାଇଁ ପ୍ରବେଶପତ୍ର ଦେବାକୁ ପଡ଼ିବ ଷଷ୍ଠିଉପର ପ୍ରବୀଣମାନଙ୍କୁ । ଆମେ କେହି କ'ଣ ଏଥିରେ ରାଜି ହେବୁ ?

ତେଣୁ ସୃଷ୍ଟିର ସ୍ୱାଦଯୋଗ୍ୟତାରେ ଓ ରସ ବାରିଧିରେ ଅନୁଭୂତି ଓ ଅବଗାହନ ପାଇଁ ଆମ ପ୍ରାଣର ବାସନା ଯେତେ ଦୁର୍ବାର ହେଉନା କାହିଁକି, ବୈଜ୍ଞାନିକ ପଦ୍ଧତି-ନିର୍ଭର ନିର୍ଲିପ୍ତ, ନିରାସକ୍ତ ବୈୟକ୍ତିକ ଭାବନାରୁ ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ 'ସାହିତ୍ୟ ବିଦ୍ୟା' ହୁଏତ ଏବେବି ଯଥାର୍ଥ ସ୍ୱୀକୃତିଲାଭ କରିନାହିଁ । ସାହିତ୍ୟ ବିଦ୍ୟାର ବିକାଶ ଯଦି ଆମର ଲକ୍ଷ୍ୟ ହୁଏ, ତେବେ ସୃଷ୍ଟିଧର୍ମୀ ସମୀକ୍ଷାକୁ ଦୂରରୁ ଶ୍ରଦ୍ଧାର୍ଘ୍ୟ ଅର୍ପଣ କରି ବୈଜ୍ଞାନିକ-ପଦ୍ଧତି-ନିର୍ଭର ସମାଲୋଚନାର ଦୁର୍ଗମ ପଥରେ ଗତିକରିବା ପାଇଁ ସଂକଳ୍ପବଦ୍ଧ ହେବା ଉଚିତ । ସାଙ୍ଗଠନିକ ଦୁର୍ବଳତା ଓ ସାଧନାଗତ ଦାରିଦ୍ର୍ୟ-ଜନିତ ଭାବଧର୍ମୀ

ସମୀକ୍ଷା ଯଥାର୍ଥ ସମୀକ୍ଷାର ସ୍ଥାନ ପୂରଣ କରି ନ ପାରେ । ଏହା ପଲ୍ଲବ-ଗ୍ରାହିତା ମାତ୍ର । ସଂଗଠନ ବିନା ସମୀକ୍ଷା ଅସମ୍ଭବ ।

ଆଜିର 'ସାହିତ୍ୟ ବିଦ୍ୟା' ବସ୍ତୁ ଆନ୍ତଃ ଶୃଙ୍ଖଳାର ଆପେକ୍ଷିକ ମୂଲ୍ୟାୟନ ଓ ସହାବସ୍ଥାନ ଉପରେ ପ୍ରତିଷ୍ଠିତ । ସମାଜବିଦ୍ୟା ଭଳି ଏହାର ଉପାଦାନ ଆହରଣ କ୍ଷେତ୍ର ସମୁଦାୟ ମାନବ ସମାଜ । ଲିଖିତ ଶବ୍ଦର ମୂଲ୍ୟ, ସମାଜରେ ଏହାର ପ୍ରଭାବ ଓ ପ୍ରତିକ୍ରିୟା ଭିତ୍ତିରେ ନିରୂପିତ । ଏ କ୍ଷେତ୍ରର ସମୀକ୍ଷା କର୍ମ କ୍ଷେତ୍ରୀୟ ଅଧ୍ୟୟନ ଉପରେ ନିର୍ଭରଶୀଳ । ସାହିତ୍ୟର ଆନ୍ତରିକ ସୃଷ୍ଟି ପ୍ରକ୍ରିୟା ଉପରେ ଆଲୋକପାତ କରିବା ପାଇଁ ଉଭୟ ମନସ୍ତତ୍ତ୍ୱ ଓ ନନ୍ଦନ-ତତ୍ତ୍ୱର ଉପଯୋଗ ଲୋଡ଼ା ।

ସାହିତ୍ୟର ଅଧ୍ୟୟନରେ କବିଙ୍କ ଜୀବନର ଓ କବିଙ୍କ ସମାଜର ବା ପରିବେଶର ଅଧ୍ୟୟନ ପାଇଁ ବ୍ୟକ୍ତିଗତ ଓ ସାମୂହିକ ନଥିପତ୍ରର ବିନିଯୋଗ ଦରକାର । ଏପରିକି କବିଙ୍କ ହସ୍ତଲିଖିତ ପାଣ୍ଡୁଲିପି ମଧ୍ୟ ଏଥିଲାଗି ମୂଲ୍ୟବାନ । ଏକ ବିଶେଷ ସମାଜରେ ସୃଷ୍ଟ ସାହିତ୍ୟରେ ଥାଏ ଲୋକ ଜୀବନର ପରଂପରାକ୍ରମେ ଗଠିତ ଆଦର୍ଶ ଓ ବଚନଭଙ୍ଗୀ । ସାଂସ୍କୃତିକ ନୃତତ୍ତ୍ୱ ଓ ଲୋକବିଦ୍ୟାର ସହାୟତା ମଧ୍ୟ ପ୍ରୟୋଜନ । ସାହିତ୍ୟର ମାଧ୍ୟମ ଭାଷା । ଭାଷା ଏକ ସମାଜର ସାଧାରଣ ସମ୍ପତ୍ତି । ଏବେ ସାଧାରଣ ଓ ସାମୂହିକ ଚିନ୍ତା ଓ ଚେତନାର ବାହକ ରୂପେ ଆଧୁନିକ 'ସାହିତ୍ୟ ବିଦ୍ୟା' ଏକାନ୍ତ ମନନଧର୍ମୀ ଓ ବୈଜ୍ଞାନିକ ଭିତ୍ତିରେ ପ୍ରତିଷ୍ଠିତ ।

**ଡକ୍ଟର ନରେନ୍ଦ୍ରନାଥ ମିଶ୍ର**

# ସୂଚନା

(କ) ପରିଭାଷା

Creative critic—କବି ସମୀକ୍ଷକ

Study of Literature as a learning—ସାହିତ୍ୟ ବିଦ୍ୟା

Inter disciplinary study—ଆନ୍ତଃଶୃଙ୍ଖଳା

Pseudo-criticism—ବ୍ୟକ୍ତିଗତ ଧାରଣା-କଳ୍ପିତ ସମୀକ୍ଷା

Scientific Law—ସୂତ୍ର

Humanities—ମାନବ ବିଦ୍ୟା

(ଖ) ସ୍ମରଣୀୟ ଉଦ୍ଧୃତି

The literary chit-chat which makes the reputation of poets boom and crash in an imaginary stock exchange is pseudo-criticism.

Northrop Frye—Fables of Identity
Harcot, Bruce (c) 1963. P. 8-9

Criticism, as a science, is totally intelligible; literature, as the subject of a science, is so far we know, an inexhaustible source of new critical discoveries··············At each stage of understanding this science we are dependent on a certain kind of scholarly organization. We need first an editor, then rhetorician, Philologist, literary psychologist, literary social historian, literary philosopher and for archetype we need a literary anthropologist.

Ibid—P. 10

The increase in the size of research projects and the number of people working on them has naturally made a difference in the status of all the individuals involved, even on highest levels.

Intellectuals To-day—T.R. Fyvel

(ଗ) ସହାୟକ ଗ୍ରନ୍ଥ

1. Literary Criticism in India—Sarita Publication, Meerut. Edited by ·Dr. Nagendra
Evolution of Criticism in Oriya—
Dr. N. Mishra

2. The Uses of Literature—Edtd. by Monroe Engel

Harvard English Studies—Harvard Univ. Press, 1973

3. Concept of Criticism by Rene' Welleck
Yale University Press, 1963

4. An Introduction to English Literature —by R. J. Rees, Macmillan, 1968



"Not to join in hate, but to join in love was I born."--Sophocles

ମଣିଷର ଜୀବନ ମଣିଷକୁ ସୃଷ୍ଟି କରିଥିବା ସ୍ରଷ୍ଟାଙ୍କର ମଣିଷକୁ ଏକ ଦାନ; ମଣିଷଲାଗି ତାହା ହେଉଛି ଏକ ଅବଲୋକନ, ଏକ ଅନୁଭବର କ୍ଷେତ୍ର, ଏକ ଆହ୍ୱାନ, ଏକ ଆରୋହଣ । ଆଗ ଜୀବନ, ଜୀବନରୁ ସମୀକ୍ଷା, ସମୀକ୍ଷାରୁ ସାହିତ୍ୟ । ସାହିତ୍ୟର ସର୍ଜନା ପଛରେ ଶ୍ରମ ଥାଏ, ସଂଗ୍ରାମ ଥାଏ, ବେଦନା ଥାଏ; ହୁଏତ ଏକ ଉନ୍ମାଦନା ଓ ଉତ୍ତେଜନା ବି ରହିଥାଏ, ଏବଂ ସର୍ବଶେଷରେ ସର୍ଜନାଜନିତ ଏକ ପୁଲକ ବି ରହିଥାଏ । ମାତ୍ର ଏହି ସବୁ କିଛିର ତଳକୁ ଅସଲ ଉଦ୍‌ବେଳକ ରୂପେ ସମୀକ୍ଷା ହିଁ ରହିଥାଏ । ସମୀକ୍ଷାର ସେହି ଦୃଷ୍ଟିଟି ଶ୍ରଦ୍ଧାର ସହୋଦର ହୋଇ ରହିଥାଏ । ସମୀକ୍ଷାର ଅର୍ଥ ହେଉଛି ଆହୁରି ନିକଟକୁ ଆସି ଦେଖିବାର ଇଚ୍ଛା, ଆହୁରି ଗଭୀର ଓ ଆହୁରି ସମଗ୍ର ଭାବରେ ଅନୁଭବ କରିବାର ଓ ଛୁଇଁ ପାରିବାର ବାସନା । ନିକଟକୁ ଆସିବ, ତଥାପି ଅଜାଡ଼ି ହୋଇ ପଡ଼ୁ ନ ଥିବ; ଛୁଇଁ ପାରୁଥିବ, ତଥାପି ଗ୍ରାସ କରିବାକୁ ଅଥବା ଗ୍ରସ୍ତ ହୋଇ ପଡ଼ିବାକୁ ମୋଟେ ମନ କରିବ ନାହିଁ; ଆତ୍ମୀୟତା ଥିବ, ଅଥଚ ଭାବପ୍ରବଣତା ନ ଥିବ;—ତାହାହିଁ ଅସଲ ସମୀକ୍ଷା । ସମ୍ଭବତଃ ଉପନିଷଦର "ତେନ ତ୍ୟକ୍ତେନ ଭୁଞ୍ଜୀଥାଃ" ବାକ୍ୟଟି ପରି । ସମୀକ୍ଷାରେ ମମତାର ବିସ୍ତାର ରହିଥିବ, ମମତାଦ୍ୱାରା ଯାବତୀୟ ସଂପ୍ରସାରଣ ମଧ୍ୟ ସମ୍ଭବ ହୋଇ ପାରୁଥିବ; ତଥାପି ମମତ୍ୱର ଆଦୌ କୌଣସି ଅପପରାକ୍ରମ କମ୍ବା ଦୂର ନ ଥିବ । ତେବେ ଯାଇ ଜୀବନକୁ ନିର୍ମଳ ଭାବରେ ଦେଖି ହେବ, ଜୀବନ ସହିତ ଯଥାର୍ଥ ଭାବରେ ଯୁକ୍ତ ହୋଇରହିବା ସମ୍ଭବ ହେବ । ଏବଂ, ସମୀକ୍ଷାର ସେହି ନିବିଡ଼ ଉଚ୍ଚତାଟିରୁ ହିଁ ସାହିତ୍ୟର ସୃଷ୍ଟି ହୋଇ ପାରିବ । ତେଣୁ ନିଷ୍କର୍ଷ ହେଲା: ସର୍ବପ୍ରଥମେ ଜୀବନ, ତା'ପରେ ଜୀବନଲାଗି ଏକ ଶ୍ରଦ୍ଧା, ଶ୍ରଦ୍ଧାରୁ ସମୀକ୍ଷା ଏବଂ ସେହି ସମୀକ୍ଷାରୁ ସାହିତ୍ୟର ସୃଷ୍ଟି ।

ଏହି ଶ୍ରଦ୍ଧାର କୌଣସି ଭୂଗୋଳ ସୀମା ନାହିଁ । ଅଧିକରୁ ଅଧିକ ସଞ୍ଚାରିତ ହେବାରେ ଲାଗିଥିବା, ତାହା ହିଁ ଶ୍ରଦ୍ଧାର ଅସଲ ଧର୍ମ । ଏହି ସଞ୍ଚାରଣର ପ୍ରକ୍ରିୟାଟି କୌଣସି କାରଣରୁ ବନ୍ଦ ହୋଇଗଲେ ଶ୍ରଦ୍ଧା ଅନେକ ସମୟରେ ଏକ ମୋହରେ ପରିଣତ ହୁଏ, ଏକ ଅହଙ୍କାରରେ ପରିଣତ ହୁଏ; ଅହଙ୍କାର ନିଜ ଚତୁଃପାଖରେ ସୀମା ବାନ୍ଧିଦେବାକୁ ଏବଂ ପାଚେରୀମାନ ଠିଆ କରାଇ ରଖିବାକୁ ସବୁଠାରୁ ବେଶୀ ଆନନ୍ଦ ପାଏ । ପାଚେରୀ ଠିଆ କରିବା ହିଁ ଜୀବନ ଶ୍ରଦ୍ଧାର ସବୁ ମୁଖ୍ୟ ଅବଲମ୍ବନ ହୋଇ ରହିବାକୁ ଆରମ୍ଭ କରିବା ମାତ୍ରକେ ମଣିଷ ଅଫିମ ଖାଇବାକୁ ଆରମ୍ଭ କରେ, ସମ୍ୟକ୍ ଅବଲୋକନ ଏବଂ ସମ୍ୟକ୍ ଅନୁଭବର ଶକ୍ତି ହରାଇବସେ । ଦିଗନ୍ତଗୁଡ଼ାକ କ୍ରମେ ବନ୍ଦ ହୋଇ ଆସନ୍ତି । ତା'ପରେ ଜୀବନକୁ ବଞ୍ଚିବାରେ ଓ ଅନୁଭବ କରିବାରେ ନାନା ଏକଦେଶୀୟତା ଆସି ପ୍ରବେଶ କରେ, ନାନା ଉତ୍ତେଜନା ଆସି ପ୍ରବେଶ କରେ । ତା' ପରେ ଆତ୍ମାନ୍ୱେଷଣ ଲାଗି ଆଉ କୌଣସି ଅବକାଶ ବି ରହେ ନାହିଁ । ଅଳସ ଭିତରେ ହେଉ ପଛକେ, ଆପଣାକୁ ଯେକୌଣସି ପ୍ରକାରେ ସୁରକ୍ଷିତ ଓ ଦ୍ୱନ୍ଦ୍ୱମୁକ୍ତ କରି ରଖିବା, ହୁଏତ ଜୀବନର ଏକମାତ୍ର ଆହ୍ୱାନ ଏବଂ ଆଧେୟ ହୋଇ ରହିଯାଏ ।

ତେଣୁ, ସବୁ ମଣିଷ ଜୀବନକୁ ମୋଟେ ସମାନ ଭାବରେ ଅବଲୋକନ କରନ୍ତି ନାହିଁ, ସମାନ ଭାବରେ ଅନୁଭବ କରିପାରନ୍ତି ନାହିଁ । ଜୀବନର ଆହ୍ୱାନଗୁଡ଼ିକୁ ଆଦୌ ସମାନ ଭାବରେ ଶୁଣିପାରନ୍ତି ନାହିଁ । ଯାହାର ଶ୍ରଦ୍ଧା ଯେଉଁ ସ୍ତରରେ ରହିଥାଏ, ସିଏ ସେତିକି ପାରେ, ସେତିକି ଗମେ, ସେତିକି ବଞ୍ଚେ । ଗୀତାର ଭାଷାରେ—ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ । ଏବଂ, ସେହି ମଣିଷ ଯଦି ସାହିତ୍ୟ ଲେଖେ, ତେବେ ତାହାର ସାହିତ୍ୟ ମଧ୍ୟ ସେହି ଅନୁସାରେ ପ୍ରସୀମିତ ହୋଇ ରହିବାକୁ ବାଧ୍ୟ ହୁଏ । ଆପଣାର ଜୀବନକୁ ବୃହତ୍ତର ଜୀବନଟି ସହିତ ସମ୍ବନ୍ଧିତ କରି ରଖିବାର ମଧ୍ୟ ନାନା ସ୍ତର ରହିଛି, ନାନା ପ୍ରସ୍ଥ ରହିଛି । ଯେଉଁ ପ୍ରସ୍ଥଗୁଡ଼ିକ ଅନୁସାରେ ହିଁ ଜୀବନପ୍ରତି ଆମ ସମୀକ୍ଷା ଦୃଷ୍ଟିର ନିର୍ଦ୍ଧାରଣ ହୋଇଥାଏ । କେବଳ ବହିର୍ପରିବେଶ ହିଁ ସେହି ପ୍ରସ୍ଥଗୁଡ଼ିକୁ ମୋଟେ ଠିକ୍ କରିଦିଏ ନାହିଁ ।

ବହିର୍ପରିବେଶର ଅବଶ୍ୟ ଏକ ପ୍ରଭାବ ରହିଥାଏ; ମାତ୍ର ଅସଲ ଅନ୍ତର ପୁରୁଷଟି କେତେଦୂର କ'ଣ ବାସନା କରୁଥାଏ, କେତେ ଉପରକୁ ଆରୋହଣ କରିବାକୁ ଇଚ୍ଛା କରୁଥାଏ ଅର୍ଥାତ୍ କେତେ ଗଭୀରକୁ ଭେଦିବାକୁ ଚାହୁଁଥାଏ ଓ କେତେ ଅଧିକ ପରିମାଣରେ ଆପଣାର ଚତୁର୍ଦ୍ଦିଗକୁ ନିଜକୁ ବିସ୍ତାରିତ କରିଦେବାକୁ ମନ କରୁଥାଏ, ସେକଥା ସର୍ବଦା ତାହାରି ଉପରେ ହିଁ ସର୍ବାଧିକ ପରିମାଣରେ ନିର୍ଭର କରେ । ଅର୍ଥାତ୍, ଆମର ଅସଲ ଅଭୀପ୍‌ସାଗୁଡ଼ିକ ଉପରେ ହିଁ ଆମ ଜୀବନର ଅବଲୋକନ ଏବଂ ସମୀକ୍ଷା ଅତ୍ୟନ୍ତ ନିର୍ଭରଶୀଳ ହୋଇ ରହିଥାଏ । ସେହି ଅବଲୋକନ ଏବଂ ସମୀକ୍ଷାର ସାମର୍ଥ୍ୟ ସ୍ତରଗୁଡ଼ିକ ହିଁ ଆମ ସାହିତ୍ୟ ସର୍ଜନାର କାଠି ଓ ଗାରଗୁଡ଼ିକୁ ନିର୍ଣ୍ଣୟ କରେ ।

ଜୀବନର ସମୀକ୍ଷା ଯେତେବେଳେ କେବଳ ଏକ ବ୍ୟକ୍ତିଗତ ସ୍ତରରୁ ଏକ ବୃହତ୍ତର ସାର୍ବଜନୀନ ସ୍ତରକୁ ପ୍ରସାରିତ ହେବାଲାଗି ଇଚ୍ଛା କରେ, ଯେତେବେଳେ ଅଳ୍ପ ଭୂମାର ସ୍ପର୍ଶ ଲୋଡ଼େ, ଜୀବନର ସମୀକ୍ଷା ଯେତେବେଳେ ସହଭୋଜନ ଲୋଡ଼େ, ସେତିକିବେଳେ ମଣିଷର ଜୀବନରେ ସାହିତ୍ୟଲାଗି ଏକ ଉନ୍ମୋଚନ ଘଟେ । ଯେତେବେଳେ ସିଏ ଅନ୍ୟମାନଙ୍କୁ ମଧ୍ୟ ନିଜର ଅନୁଭବରେ ଭାଗ ଦେବାକୁ ବାହାରେ, ଅନ୍ୟମାନଙ୍କୁ ମଧ୍ୟ ସାଙ୍ଗରେ ନେବାକୁ ଇଚ୍ଛା କରେ, ଅନ୍ୟମାନଙ୍କୁ ତା' ନିଜ ସହିତ ଏକାଠି ପତରର ଉପରେ ଆଣି ବସାଇବାକୁ ଚାହେଁ; ଏବଂ ସେଇଥିରୁ ହିଁ ସାହିତ୍ୟକର୍ଷଣର ମୁହୂର୍ତ୍ତଟି ଜନ୍ମଲାଭ କରେ । କେବଳ ବ୍ୟକ୍ତିଗତ ହୋଇ ରହିଥିବା ପର୍ଯ୍ୟନ୍ତ ଜଣେ ମଣିଷର ସମୀକ୍ଷା ଏବଂ ମୁମୁକ୍ଷା ଗୁଡ଼ାକ ମୋଟେ ସାହିତ୍ୟ ମଧ୍ୟକୁ ଉତ୍ତୋଳିତ ହୋଇପାରନ୍ତି ନାହିଁ । ବ୍ୟକ୍ତିର ପ୍ରେମ କେବଳ ସେହି ବ୍ୟକ୍ତି ହୃଦୟର ଚଉହଦୀ ମଧ୍ୟରେ ଆବଦ୍ଧ ହୋଇ ରହିଥିବା ପର୍ଯ୍ୟନ୍ତ ତାହା ଯେପରି କେବଳ ଲୌକିକ ହୋଇ ରହିଥାଏ, ଐକାନ୍ତିକ ଭାବରେ ଏକ ବ୍ୟକ୍ତିଗତ ମୁଗ୍ଧତା ହୋଇ ରହିଥାଏ ଓ ତେଣୁ ପ୍ରେମରସବୋଧର ଅନ୍ତରାଳ ହୋଇ ରହିଥାଏ, ଠିକ୍ ସେହିପରି । ଅନୁଭବକୁ ସାର୍ବଜନୀନ ଅର୍ଥାତ୍ ସହଭୋଜନର ଯୋଗ୍ୟ କରିବାର ଅନ୍ୟ ନାମ ହେଉଛି ଅଭିବ୍ୟକ୍ତି ।

(୧)
ସାହିତ୍ୟିକ ଓ କଳାତ୍ମକ ଯାବତୀୟ ଅଭିବ୍ୟକ୍ତି ଧର୍ମତଃ ଏହି ଧାରାଟିକୁ ହିଁ ଅନୁସରଣ କରିଥାଏ । ଏଥିରେ ଅନ୍ୟମାନଙ୍କ ଲାଗି ଖୁଣ୍ଟ ବନ୍ଧାଗଲେ ଜାଗା ମୋଟେ ଘରେ ନାହିଁ । ଗୋଟାଏ ଘର ରହିଛି, ଯେଉଁଠାରେ ଅନ୍ୟ ଜନମାନଙ୍କୁ ଭେଟିଲେ, ସମସ୍ତ ବନ୍ଧନ ମୁକୁଳିତ ହୁଏ । ଯେହେତୁ ଘରଟି ହେଉଛି କଳାଶିଳ୍ପ ଘର, ସାହିତ୍ୟର ଘର, ଉପଲବ୍ଧିର ଘର । ଏହି ଘରଟିର ଯାବତୀୟ ବାଣିଜ୍ୟରେ ଏକ ସ୍ୱାଭାବିକ ମୂଲ୍ୟ ହିଁ ନିଜ ପାରସ୍ପରିକ ପରିଚୟକୁ ସ୍ୱୟଂମୂଳ ସମ୍ପର୍କ ଓ ସର୍ବମୂଲ୍ୟ ମୁଦ୍ରା ହୋଇ ରହିଥାଏ । ସମ୍ଭବତଃ ସେଇଥିଲାଗି କାବ୍ୟର ସମୀକ୍ଷକମାନେ ଆନନ୍ଦକୁ ହିଁ ସାହିତ୍ୟର ଅସଲ କଷଟି ବୋଲି କହିଛନ୍ତି ।

ଆନନ୍ଦର ବି କେତେ ନା କେତେ ସୋପାନ ରହିଛି; କେତେ ନା କେତେ ଉଚ୍ଚତା ଓ କେତେ ନା କେତେ ଗଭୀରତା ରହିଛି । ଉପନିଷଦରେ ଆନନ୍ଦକୁ ବ୍ରହ୍ମ ବୋଲି କୁହାଯାଇଛି, ଜୀବନର ମାର୍ଗ ସୂରଣାରେ ଗୋଟିଏ ସ୍ଥିତି ବା କୋଷକୁ ଆନନ୍ଦମୟ କୋଷ ବୋଲି କୁହାଯାଇଛି ଏବଂ ଅନ୍ୟତ୍ର "ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତି କଦାଚନ" ବୋଲି ମଧ୍ୟ କୁହାଯାଇଛି । ଏସବୁ କେବଳ ଗୋଟାଏ ଗୋଟାଏ କଥା ନୁହେଁ, ଏସବୁ ହେଉଛି ଆପଣାର ଜୀବନକୁ ନେଇ କରାଯାଇଥିବା ତପସ୍ୟାର ଧନ । ଏଗୁଡ଼ିକ ଆମେ ଜୀବନରେ ଆରୋହଣ କରୁଥିବା ଶୃଙ୍ଗଗୁଡ଼ିକର କଥା ଏବଂ ନିୟମତଃ ଏକ ଚେତନାର ସମ୍ଭାବ୍ୟ ଭୂମି ଉପରେ ହିଁ ସେହି ଆରୋହଣ ଗୁଡ଼ିକ ସମ୍ଭବ ହୋଇଥାଏ । ଚେତନା ଅଳପ ଭିତରେ ଆବଦ୍ଧ ହୋଇ ରହିବାକୁ ଚାହୁଁଥିଲେ ଅର୍ଥାତ୍ ମୋଟେ ଆରୋହଣ କରିବାକୁ ଚାହୁଁ ନଥିଲେ ତାହା କେବଳ ଏକ ବ୍ୟକ୍ତିଗତ ଚେତନା ହୋଇ ରହିଯାଏ । ଶରୀର ପର୍ଯ୍ୟନ୍ତ ଓ ଘର ବୁଦ୍ଧିଆ ହୋଇ ରହିଯାଏ ସିନା, ମାତ୍ର ଖଣ୍ଡ ସଙ୍କୁଚିତ ହୋଇ ହିଁ ରହିଯାଏ । ଚେତନା ଆଉ କାହାର ପର୍ଯ୍ୟନ୍ତ ଯାଇ ନହେବାକୁ ଚାହୁଁଥିଲେ ନିଜର ଉପାଦାନଗୁଡ଼ିକୁ ନେଇ ଗୋଟିଏ ଦୁର୍ଗ ତିଆରି କରି ରଖିଥାଏ, ସେହି ଦୁର୍ଗର ଝରକା ଓ କବାଟ ଗୁଡ଼ିକୁ ଖୋଲିବାଲାଗି ମୋଟେ ରାଜି ହୁଏ ନାହିଁ, ଶୂନ୍ୟଗୁଡ଼ାକୁ ହିଁ ସମ୍ପଦ ବୋଲି ସ୍ୱୀକାର କରି ନେଇଥାଏ । ଇଂରାଜୀ ଦାର୍ଶନିକ ବେକନ୍ ନାନାପ୍ରକାର
।

ଭେଦ ଦେଖାଇ ଏହି ଗୁମ୍ଫାଗୁଡ଼ିକର ଆଲୋଚନା କରଯାଇଛନ୍ତି । ଆମର ଆନନ୍ଦ ପ୍ରକୃତିରେ କେଉଁ ସ୍ତରର ଓ କେତେ ଆସ୍ୱାଦନର, ତାହା ଆମ ଅନ୍ତଃକରଣର ବ୍ୟାକରଣଟି ଅନୁସାରେ ଆମ ଚେତନା ଉପରେ ହିଁ ନିର୍ଭର କରି ରହିଥାଏ । ସାହିତ୍ୟ ବୋଲି ଆମ୍ଭ ଭିତରୁ ଯିଏ ଯେତେ ଯାହାକିଛି ଲେଖନ୍ତି, ତାହାର ଉଚ୍ଚତା ଓ ଗଭୀରତା ଗୁଡ଼ିକ ମଧ୍ୟ ଆମ ଚେତନାଗତ ଅସଲ ଅନୁଭବଗୁଡ଼ିକ ଦ୍ୱାରା ନିର୍ଦ୍ଧାରିତ ହୋଇଥାଆନ୍ତି ।

ସାହିତ୍ୟର ସମୀକ୍ଷା ମୂଳତଃ ଚେତନାର, ଅନୁଭବର, ସଂସ୍କାର ଓ ସଂସ୍କରଣର ଏକ କଳନା କରିବାକୁ ମନ କରିଥାଏ । ତେଣୁ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଦେଖିବାକୁ ଏବଂ ଛୁଇଁବାକୁ ବାସନା ନ କରିଥିବା ପର୍ଯ୍ୟନ୍ତ ସାହିତ୍ୟର ଆଦୌ କୌଣସି ଯଥାର୍ଥ ସମୀକ୍ଷା ହୋଇପାରେ ନାହିଁ । ଏକାତ୍ମକତା ଦ୍ୱାରା ଜାଣିବା, ଏକାତ୍ମକତା ଦ୍ୱାରା ଜାଣିବା ଓ ଛୁଇଁବା,—ତାହାହିଁ ହେଉଛି ସାହିତ୍ୟ ସମୀକ୍ଷାର ସର୍ବପ୍ରଥମ ବିଧି । ଏକାତ୍ମକତା ଯାଏଁ ଯାଇ ପାରିବାକୁ ଆମ ଅନେକଙ୍କର ଅନେକ ସମୟରେ ଯଥେଷ୍ଟ ଧୈର୍ଯ୍ୟ ନଥାଏ । ତେଣୁ କେବଳ ଏକ ଉପରଠାଉରିଆ ଭାବରେ ଦେଖି ଆମେ କାମ ସାରିଦେଉ, ଭଲ ଓ ମନ୍ଦର କେତେଟା ବର୍ଗର ଶୁଣାଇ ଦେଇ ଆମେ ତାହାକୁ ହିଁ ଆଲୋଚନା ବୋଲି କହୁ । ଆମର ଜାଣିବା କେବଳ ଆମର କେତେକ ଭଲ ଲାଗିବା ଓ ଭଲ ନ ଲାଗିବାର ବାଡ଼ ଭିତରେ ହିଁ ସୀମାବଦ୍ଧ ହୋଇ ରହିଥାଏ । ଆମେ ଆମ ନିଜର ସୀମାଗୁଡ଼ାକ ଦେଇ ଦେଖୁ ଏବଂ ତେଣୁ କେବଳ ସୀମିତ ଭାବରେ ହିଁ ଦେଖିବାକୁ ସମର୍ଥ ହେଉ । ଦାଣ୍ଡରେ ଅର୍ଥାତ୍ ବଜାରରେ ଯେଉଁ ତରାଜୁଗୁଡ଼ାକ ମିଳୁଥାଏ, ଆମେ ସେହିପରି କେତେଟା ତରାଜୁରେ ଦେଖୁ, ତେଣୁ ଅସଲ ଦେଖାଗୁଡ଼ିକୁ ତଥାପି ପ୍ରତ୍ୟାଖ୍ୟାତ କରି ରଖିଥାଉ । ଅସଲ କଥା ହେଉଛି, ଆମେ ନିଜେ ଯେତିକି ଦେଖିବାର ସାମର୍ଥ୍ୟ ଅର୍ଜନ କରିଥାଉ, କେବଳ ସେତିକିମାତ୍ର ହିଁ ଦେଖୁ । କେତେବେଳେ ଜଙ୍ଗଲଟାକୁ ନ ଦେଖି ଗଛଗୁଡ଼ାକୁ ଦେଖୁ ଓ ଆଉ କେତେବେଳେ ମୋଟେ ଗଛଗୁଡ଼ାକୁ ନ ଦେଖି ଜଙ୍ଗଲଟାକୁ ହିଁ ଦେଖିବାକୁ ବାହାରିଥାଉ । ବେଳେବେଳେ ଭିତରଟାକୁ ଦେଖିବା ଲାଗି ମୋଟେ ସାହସ ନକରି କେବଳ ବାହାରଟାକୁ ଦେଖି ଆସୁ ।

ପୁଣି ବେଳେବେଳେ ବାହାର ଏବଂ ଭିତରକୁ ସତେଅବା ଦୁଇଟା ଅଲଗା ଅଲଗା ପୃଥିବୀରେ ବିଭକ୍ତ କରି ପକାଉ ଓ ତେଣୁ ଆମେ ବିଗ୍ରର କରୁଥିବା ସାହିତ୍ୟଟିର ଅସଲ ସମଗ୍ରତାଟିକୁ ମୋଟେ ସ୍ପର୍ଶ କରି ପାରୁନାହିଁ । ସେହି ସାହିତ୍ୟକୁ ସୃଷ୍ଟି କରିଥିବା ସାହିତ୍ୟକାରକୁ ମଧ୍ୟ ଦୁଇଭାଗ କରି ଦେଖାଇ ହୁଏତ ଏକ ଅକର୍ମ ଭିତରେ ଯାଇ ପଶିଥାଉଁ ।

କଳାତ୍ମକ ଜୀବନ ଓ କଳାତ୍ମକ ସର୍ଜନାରେ ହ୍ଲାଦିନୀ ପରି କାର୍ଯ୍ୟ କରୁଥିବା ଏହି ଚେତନା ବା ଚିନ୍ମୟତାକୁ ସାହିତ୍ୟକାର ବିଶ୍ୱନାଥ 'ଚୈତନ୍ୟ-ତନ୍ମୟତା' ବୋଲି କହିଛନ୍ତି । ଯେତେବେଳେ ଆମର ଚେତନା ସଂସାର ଭିତରେ ରହିଥିବା ସବୁକିଛିକୁ ଗ୍ରନ୍ଥି ଆପଣାର କୌଣସି ଏକ ଗୁମ୍ଫା ଭିତରେ କଏଦହୋଇ ରହିଥାଏ, ସେତେବେଳେ ଅସଲ ତନ୍ମୟତାଟି ମୋଟେ ସମ୍ଭବ ହୁଏ ନାହିଁ । ଯେତେବେଳେ ଏହି ସବୁକିଛି— ସ୍ଥୂଳ ଓ ସୂକ୍ଷ୍ମ, ଅନ୍ନ ଓ ଆନନ୍ଦ ବର୍ତ୍ତମାନ ଓ ଭବିଷ୍ୟ, କାଳାନ୍ତ ତଥା କାଳାତୀତ, ଏକ ସମଗ୍ର ଓ ଅଖଣ୍ଡ ଚେତନା ବିସ୍ତାର ମଧ୍ୟରେ ଆସି ଧରାଦେଇ ପାରନ୍ତି, ଯେତେବେଳେ କୌଣସି ବ୍ୟାପାର ଅଥବା କୌଣସି ଗୋଟିଏ ଭୂମି ବି ଅଦ୍ରବ୍ୟ ଅଥବା ଏକ ସମଗ୍ର ଜୀବନ ନିସୃତର ବାହାରେ ଥିବା ପରି ମୋଟେ ମନେ ହୁଏ ନାହିଁ, ସେତିକି-ବେଳେ ଯାଇ ସେହି ତନ୍ମୟତାକୁ ଅନୁଭବ କରିହୁଏ । ସେହି ତନ୍ମୟତା ମଧ୍ୟରେ ଗୋଟିଏକୁ ଦେଖିଲି ମାତ୍ରକେ ସବୁଟିକୁ ଦେଖିହୁଏ, ଗୋଟିକୁ ସ୍ପର୍ଶ କଲି ମାତ୍ରକେ ନିଜ ସମେତ ସବୁଟିକୁ ସ୍ପର୍ଶ କରିହୁଏ, ଏବଂ ଜୈନ ଅପଭ୍ରଂଶ ସାହିତ୍ୟର "ଯୋ ଏବଂ ଜାଣଇ, ଯୋ ସବ୍ବଂ ଜାଣଇ" ବାକ୍ୟଟିର ଉପଲବ୍ଧି ସେତିକିବେଳେ ହୁଏ । ଏହିଭଳି ଏକ ଚେତନାକୁ ଛୁଇଁ ପାରିବା ଓ ସେଇଠାରୁ ଥାଇ ଜୀବନକୁ ଦେଖିବା ହିଁ ଜଣେ ଯଥାର୍ଥ ସାହିତ୍ୟକାରର ଆକାଙ୍କ୍ଷା ହୋଇ ରହିଥିବା ଉଚିତ । ମାତ୍ର ସେହି କଥାଟି ସବୁବେଳେ ମୋଟେ ହୋଇପାରେ ନାହିଁ । ପ୍ରାୟ ଦେଢ଼ ଶହ ବର୍ଷ ତଳେ ଆଧୁନିକ ଅସ୍ତିତ୍ୱବାଦୀ ଜୀବନ ଦୃଷ୍ଟିର ଜଣେ ଆଦ୍ୟ ପ୍ରସ୍ଥାପକ ଡେନ୍‌ମାର୍କ୍‌ର କିଅର୍କଗୋର୍ ତାଙ୍କ ଡାଏରି ବହିରେ ଲେଖିଛନ୍ତି : "କବି ଓ ସାହିତ୍ୟକାରର ଜୀବନ ଗୋଟାଏ ପୃଥିବୀରେ ରହିଥାଏ, ତା' ସାହିତ୍ୟ ରଚନାର ଜୀବନ

ଓ ଯାବନ ଗୁଡ଼ାକ ଏକାବେଳେକେ ଅନ୍ୟ ଏକ ପୃଥିବୀରେ ଯାଇ ରହିଥାଏ । ତା'ର ଆଦର୍ଶ ଗୁଡ଼ାକ କେବଳ ତା' କଳ୍ପନା ଭିତରେ ଥାଏ । ତା'ର ବ୍ୟକ୍ତିଗତ ଜୀବନଧାରଣର ମାନଟି ତା'ର ସାହିତ୍ୟଧାରଣାର ପ୍ରାୟ ଏକ ବିଦ୍ରୂପ ପରି ହୋଇ ରହିଥାଏ ।...ସାହିତ୍ୟକାରମାନେ ସତ୍ୟର ଚର୍ଚ୍ଚା କରୁଥାନ୍ତି ବୋଲି କୁହାଯାଉଥାଏ ସିନା, ମାତ୍ର ବସ୍ତୁତଃ ସେମାନେ କେବଳ ନିଜର ହିଁ ଚର୍ଚ୍ଚା କରିବାରେ ଲାଗିଥାନ୍ତି;—କେବେହେଲେ ସତ୍ୟର ସେବା କରନ୍ତି ନାହିଁ ।" (୧)

ସାହିତ୍ୟକୁ ଜୀବନର ବାହାରେ ଅବସ୍ଥିତ ବୋଲି ମନେ କଲେ ସାହିତ୍ୟକାରର ପ୍ରାୟ ଏହିପରି ଏକ ଦଶା ହୋଇଥାଏ । ସାହିତ୍ୟକୁ କେବଳ ବାହାରୁ ଆଣି ଦେହରେ ଖଞ୍ଜା ହୋଇଥିବା ଏକ ଭୂଷଣ ପରି ଗ୍ରହଣ କରୁଥିବା ପର୍ଯ୍ୟନ୍ତ ସାହିତ୍ୟ ଓ ଜୀବନର ପାରସ୍ପରିକ ଭୂମିଟି ଉପରେ ପ୍ରାୟ ଏହିପରି ଏକ ଦ୍ୱନ୍ଦ୍ୱ ଭୋଗ କରିବାକୁ ପଡ଼ିଥାଏ । ସେତେବେଳେ ବ୍ରହ୍ମକୁ ସତ୍ୟ ବୋଲି ପ୍ରତିପାଦିତ କରିବାକୁ ଯାଇ ଜଗତ୍‌କୁ ମିଥ୍ୟା ବୋଲି ଘୋଷଣା କରିବାକୁ ହୁଏ । ଭଗବାନ୍‌ଙ୍କୁ କୌଣସି ଏକ ଉଚ୍ଚ ବୈକୁଣ୍ଠରେ ନେଇ ଥାପିବାପାଇଁ ଏହି ପୃଥିବୀକୁ ଭଗବଦ୍ ବର୍ଜିତ ବୋଲି ଅନୁମାନ କରିବାକୁ ହୋଇଥାଏ । ସେତେବେଳେ ସାହିତ୍ୟ କହିଲେ ମଣିଷର ଏହି ଜୀବନ ଭିତରୁ ଗ୍ରାଉଡ଼ିକରି ପଳେଇବାକୁ ବୁଝାଏ, ସୌନ୍ଦର୍ଯ୍ୟ କହିଲେ ଜୀବନର ବାହାରେ ଥିବା ଆଉ ଏକ ଅନ୍ୟ କିଛିକୁ ବୁଝାଏ, ପ୍ରାୟ ଏକ ତାତ୍ତ୍ୱିକ ଭାବପ୍ରବଣତାକୁ ବୁଝାଉଥାଏ । ଏବଂ, ଆମ ସାହିତ୍ୟକାରମାନଙ୍କର ଯାବତୀୟ ମଣ୍ଡନ ଓ ଅଭିମଣ୍ଡନ ସତ୍ତ୍ୱେ ଏକ ମୂଳଭୂତ ଅସ୍ୱୀକାରହିଁ ଜୀବନର ମର୍ଜିଗୁଡ଼ାକୁ କାମୁଡ଼ି କରି ଧରିଥାଏ । ପୂର୍ବକାଳରେ ସାହିତ୍ୟର ସାଧ ମୂଳତଃ ତାହା ହିଁ ଥିଲା । ସେତେବେଳେ ଋଷି ହୁଏତ ଅରଣ୍ୟ ଭିତରେ ଯାଇ ବାସ କରୁଥିଲା, ଶ୍ରଦ୍ଧାଗୁଡ଼ାକ ବୈରାଗ୍ୟର ଆବରଣ ତଳେ ଲୁଚି ହୋଇ ରହି ଯାଉଥିଲେ । କବି ଓ ସାହିତ୍ୟକାର ସଙ୍ଗରେ ଯାଇ ବସୁଥିଲେ । ଜୀବନ ଭିତରେ ହୁଏତ କେହି ନ ଥିଲେ । କବି ଓ କାବ୍ୟକାର ତା'ର ଦୈନନ୍ଦିନ ଜୀବନଟିକୁ ଜୀବନ ଭିତରେ ରହି ବାସ କରୁଥିଲା ସତ, ମାତ୍ର ସାହିତ୍ୟ

କରୁଥିବା ସମୟରେ ତାଙ୍କୁ ଜୀବନକୁ ଗୁଡ଼ିଏ ଖଣ୍ଡରେ ଦୂରରେ ଅଲଗା ହୋଇ ରହିଥିବା ସତ୍ତାର ଏକ କଳ୍ପନା କରିବାକୁ ପଡ଼ୁଥିଲା । ସେହି ସତ୍ତାର ମଧ୍ୟ ଏକ ଜୀବନ ରହିଥିଲା ସତ, ମାତ୍ର ସାହିତ୍ୟକାର ଲାଗି ତାହାକୁ ଆପଣାର ସାହିତ୍ୟ ଭିତରକୁ ଆଣିବା ଦମ୍ଭ ଶ୍ରୀ ନୈତିକ ହୋଇ ରହିଥିଲା । ତେଣୁ ଏକ ଦେବଧର୍ମୀଙ୍କୁ ଅନୁକୂଳ ରୂପେ ଗ୍ରହଣ କରି ସେହି ତାଙ୍କୁ ପୂଜା ଭିତରକୁ ପଠାଇବା ଏବଂ ପ୍ରଶଂସିତ ହେବା ଭଳି ଏକ ସାହିତ୍ୟ ଲେଖିବାକୁ ପଡ଼ୁଥିଲା । ଦେବତା-ମାନଙ୍କର ବର୍ଣ୍ଣନା ଗାନ କରିବାର ଆଢ଼ୁଆଳରେ କେତେବେଳେ କେମିତି ମଣିଷଙ୍କ ଜୀବନର ବର୍ଣ୍ଣନା ଗୁଡ଼ାକ ହୁଏତ ଉପଲକ୍ଷ୍ୟ ରୂପେ ଏକ ଥାନ ପାଇ ଯାଉଥିଲେ ସିନା, ମାତ୍ର ଜୀବନର ଅସଲ ଖବର ଗୁଡ଼ାକୁ ଏକାବେଳକେ ପାଚେରୀ ପାଖରେ ରହିବାକୁ ପଡ଼ୁଥିଲା । ସିଏ, ସତ୍ତାର କର୍ତ୍ତା, ତାଙ୍କର ଚିଧିରୁ ବୃନ୍ଦାବନ ଲାଗି ସତ୍ତାର ସାହିତ୍ୟ ଉଦ୍ଦିଷ୍ଟ ହୋଇ ରହୁଥିଲା । ତେଣୁ ସେହି ସାହିତ୍ୟ ଜୀବନର ଗୋଟାଏ କଣକୁ ମଧ୍ୟ ସ୍ପର୍ଶ କରୁ ନଥିଲା । ଏବଂ ଆହୁରି ବଡ଼ କଥା ହେଉଛି, ସେହି ସାହିତ୍ୟର ସମୀକ୍ଷା ଲାଗି ମଧ୍ୟ ଆଉସୌ ଖୁବ୍ ବେଶୀ ଆବଶ୍ୟକତା ରହୁ ନଥିଲା ।

କେବଳ ସାହିତ୍ୟର ପଚା ଅଙ୍ଗରେ କବି "କବି" ମଧ୍ୟରେ ହୁଏତ ଏକ ପ୍ରତିଦ୍ୱନ୍ଦ୍ୱିତା ହେଉଥିଲା । ପ୍ରଶଂସ-ଅଙ୍ଗର ପ୍ରଦର୍ଶନ-ପ୍ରାନ୍ତରରେ କବିମାନେ ଆପଣା ଆପଣାର କାଳ ମାରି ପେଟର ଲଗାଇ ନାନା ଚମତ୍କାରିତାର ସର୍ଜନ ହୋଇଥିଲେ । ଯେତେବେଳେ ସମସ୍ତେ ପ୍ରଥମତଃ ମଞ୍ଚି କରି ରହୁଥିଲେ । ସଂସ୍କୃତ ଧ୍ୱନ୍ୟାଲୋକ'ର ଲେଖକ କାବ୍ୟର ଯାବତୀୟ ଉପକରଣ, ଅର୍ଥାତ୍ କଥା, ଭାଷା, ଅଳଙ୍କାର ଓ ଛନ୍ଦ ସବୁକିଛି ଥାଇ ମଧ୍ୟ କାବ୍ୟର ସମଗ୍ରତାରେ ଅର୍ଥାତ୍ ଆତ୍ମାସ୍ୱରୂପ ଶକ୍ତିର ଅଭାବ ରହିଥିଲେ ସେହି କାବ୍ୟକୁ ଏକ ଅକାବ୍ୟ କୁହାଯିବ ବୋଲି ନିର୍ଦ୍ଦେଶିତ କରି ଦେଇଛନ୍ତି । ସିଏ ତାହାକୁ 'ଚିତ୍ରକାବ୍ୟ' ବୋଲି କହିଛନ୍ତି; କାବ୍ୟର ଏକ ଅନୁକୃତି ବୋଲି କହିଛନ୍ତି; କେବଳ ବାଚ୍ୟ-ବାଚକ ବୈଚିତ୍ର୍ୟମାତ୍ରାଶ୍ରୟେଣ ଉପନିବଦ୍ଧଂ ଆଲେଖ୍ୟପ୍ରଖ୍ୟଂ ଯତ୍ ଆଭାସତେ ତତ୍ ଚିତ୍ରମ୍ । ନ ତତ୍ ମୁଖ୍ୟଂ କାବ୍ୟଂ । କାବ୍ୟାନୁକାରୋ ହି, ଅସୌ । ଏକ ଆଧୁନିକ ବ୍ୟଞ୍ଜନା ଦେଇ ଆମେ କାବ୍ୟ ବା ସାହିତ୍ୟର ଚେତନାଗତ ଭୂମି

ଉଦ୍ଧାରଟିକୁ ତାହାର ରସସୂତ୍ରର ଏକ ପ୍ରଧାନ ନିର୍ଣ୍ଣୟସୂଚକ ବୋଲି କହି ପାରିବା । ଶବ୍ଦକାବ୍ୟକୁ ଯଦି କାବ୍ୟ ସର୍ଜନାର ପରିସ୍ଥିତିଗତ ଆଦର୍ଶ ବୋଲି ଗ୍ରହେ, ତେବେ ତାହାର ସମୀକ୍ଷା ବୋଲି ଯେ ଆଉ ବିଶେଷ କିଛି ରହିବ ନାହିଁ, ସେହି କଥାଟି 'ଅତ୍ୟନ୍ତ' ସ୍ପଷ୍ଟ ହୋଇଯାଉଛି । ଗଠଣ ଓ ମଣ୍ଡନରି ସମୀକ୍ଷା ହେଉଛି ପ୍ରାୟ ଏକ ବ୍ୟାକରଣଧର୍ମୀ 'ଭୁଲ୍‌ଠିକ୍‌ର' ଆଲୋଚନା ସୂତ୍ରାନୁସରଣର ଔଚିତ୍ୟ ହେଉଛି ସେହି କ୍ଷେତ୍ରରେ ପ୍ରାୟ ଏକମାତ୍ର ଔଚିତ୍ୟ । ସେହି 'ଧ୍ୱନ୍ୟାଲୋକ' ଗ୍ରନ୍ଥରେ ଔଚିତ୍ୟବନ୍ଧକୁ ସାହିତ୍ୟରସର ଉପନିଷଦ ଓ ସାହିତ୍ୟତତ୍ତ୍ୱର ପରବିଦ୍ୟା (ରସସ୍ୟୋପନିଷତ୍‌ପରା) ବୋଲି କୁହାଯାଇଛି । ଗୋଟାଏ କାବ୍ୟକୁ ଯିଏ ସମଗ୍ର 'ବସ୍ତୁ' ବୋଲି ଗ୍ରହଣ କରେ ଏବଂ ସେହି ବାଉଳାରେ ସମଗ୍ର 'ବ୍ୟାପାରଟିର ଆତ୍ମାସ୍ୱରୂପ ରସଧ୍ୱନିକାବ୍ୟକୁ ଯିଏ ଭୁଲିଯାଏ, ସାହିତ୍ୟ ଭିତରେ ସିଏ ଏକ ଅନୌଚିତ୍ୟର ହିଁ ଅବତାରଣା କରାଇଥାଏ ।

ପ୍ରାୟ ଏହିପରି ଏକ ସଂସ୍କାରଗତ କାରଣରୁ ହିଁ ସାହିତ୍ୟର ସମୀକ୍ଷା ସାହିତ୍ୟର ସମସ୍ତ କ୍ଷେତ୍ରଟିରେ ଅନେକତଃ ଏକ ବିଶ୍ଳେଷଣାତ୍ମକ କସରତ୍‌ପରି ହୋଇ ରହିଥିଲା ଏବଂ ସେହି ସମୀକ୍ଷା ଆଦୌ ସର୍ଜନାତ୍ମକ ହୋଇପାରିବ ବୋଲି କେହି ମୋଟେ ବିଶ୍ୱାସ କରୁ ନ ଥିଲେ । ଅପାର କାବ୍ୟସଂସାର ଭିତରେ କବିକୁ ହିଁ ଏକମାତ୍ର ପ୍ରଜାପତି (କବିରେବ ପ୍ରଜାପତିଃ) ବୋଲି କୁହାଯାଉଥିଲା । ସାହିତ୍ୟ ଜୀବନଠାରୁ ଅଲଗା ଆଉ ଗୋଟାଏ ଧନ୍ଦା ହୋଇ ଉଠିଲେ, ସାହିତ୍ୟ ଏହି ଜୀବନର ସମସ୍ତ ଭୂମିଟିରୁ ପଳାୟନ କରି ମଧ୍ୟ ଆସ୍ୱାଦନର କୌଣସି ଏକାନ୍ତ ପୂଜନ ଅଥବା ପଲ୍ଲବ ସୁଖ କାର୍ଯ୍ୟ କରୁଥିବା ପର୍ଯ୍ୟନ୍ତ ସାହିତ୍ୟର ସମୀକ୍ଷାକୁ ଏକ ସର୍ଜନାତ୍ମକ ପ୍ରୟାସ ବୋଲି ସ୍ୱୀକାର କରିବାକୁ କେହି ରାଜି ହୁଅନ୍ତି ନାହିଁ । ପୁନଶ୍ଚ, ଯେତେବେଳେ ସାହିତ୍ୟ ଶକ୍ତି ଅଥବା କଳାଶକ୍ତିକୁ ସବୁଥିବା ବେଳେବେଳେ ବାହାରୁ ଆସି ଆମକୁ ମାଡ଼ି ବସୁଥିବା ଏକ କାଳପୀଶକ୍ତି ବୋଲି କଳ୍ପନା କରାଯାଏ, ସେତେ-ବେଳେ ମଧ୍ୟ ସାହିତ୍ୟ-ସମୀକ୍ଷାକୁ ସାହିତ୍ୟର ଏକ ଆବଶ୍ୟକ ଅଙ୍ଗରୂପେ ନେଉବାଲାଗି ଆମ ପାଖରେ ପ୍ରାୟ କୌଣସି ଔଚିତ୍ୟ ନ ଥାଏ । ଯାହା

ହେଉଛି, ଯଦ ତାହା ବାହାରୁ ହେଉଛି, ହଠାତ୍ ହେଉଛି ଏବଂ ସେହି ନିର୍ଦ୍ଦିଷ୍ଟ ମୁହୂର୍ତ୍ତିଟିକୁ ସମ୍ପୂର୍ଣ୍ଣ କରାଇ ଆଣିବାରେ ସ୍ୱୟଂ ସାହିତ୍ୟକାରର ମୋଟେ କୌଣସି କରୁ ରହୁ ନାହିଁ, ସେଠି ସମୀକ୍ଷା ଲାଗି ଆଉ ମୋଟେ କୌଣସି ଭୂମି ରହୁବ ନାହିଁ । କାଳଟି ଆସୁଛି ଓ ଚାଲିଯାଉଛି; ତେବେ ସେହି କ୍ଷେତ୍ରରେ କ'ଣ କାଳଟାର ସମୀକ୍ଷା କରାଯିବ ? ଯେତେବେଳେ ସମୀକ୍ଷାକୁ ନିଜେ ହିଁ ସାହିତ୍ୟ କଳ୍ପିତ୍ ଅନ୍ଧକାର ଭିତରେ ଆତ୍ମସର୍ବସ୍ୱ ହୋଇ ରହିବା ସକାଶେ ଏକ ସବୁଗ ଦେଖାଏ, ହୁଏତ ସେତିକବେଳେ ସମୀକ୍ଷାକୁ ସର୍ଜନାତ୍ମକ ବୋଲି ନ କହିବାକୁ ହିଁ ଅଧିକ ପ୍ରଶସ୍ତ ଏବଂ ଲାଭଦାୟକ ବୋଲି ମାନି ନିଆ ଯାଏ । ମାତ୍ର, ମନୁଷ୍ୟର ଜୀବନଦୃଷ୍ଟି ଅଧିକରୁ ଅଧିକ ପରିମାଣରେ ଆଧୁନିକ ହୋଇ ଆସୁଥିବା ସଙ୍ଗେ ସଙ୍ଗେ ତାର ଆଗ୍ରହ ଓ ଆଲୋଡ଼ନମାନ କ୍ରମଶଃ ଅଧିକରୁ ଅଧିକ ପରିମାଣରେ ଜୀବନବାଚୀ ହେବାକୁ ମନ କରୁଥିବା ସଙ୍ଗେ ସଙ୍ଗେ ଏବଂ ସାହିତ୍ୟକୁ ମଧ୍ୟ ସିଏ ଜୀବନର ଏକ ସମଗ୍ର ଆବେଦନ-ମୂଳକ ଆଲେଖ୍ୟ ବୋଲି ଗ୍ରହଣକରି ଶିଖୁଥିବା ସଙ୍ଗେ ସଙ୍ଗେ ସାହିତ୍ୟ ସମୀକ୍ଷାର କ୍ଷେତ୍ରରେ ମଧ୍ୟ ଏକ ଅନୁରୂପ ଉତ୍ତରଣ ହିଁ ଘଟିବାରେ ଲାଗିଛି ।

ବାହାରୁ ଥାଇ ଯେଉଁ ସମୀକ୍ଷା ହୁଏ, ତାହା କେବେହେଲେ ସର୍ଜନାତ୍ମକ ହୋଇପାରେ ନାହିଁ । କେବଳ ଏକ ଅନୁପ୍ରସ୍ଥ ବ୍ୟାଖ୍ୟା ଭିତରେ ଆପଣାକୁ ସୀମାବଦ୍ଧ କରି ରଖିବାକୁ ଚେଷ୍ଟା କରୁଥିଲେ ମଧ୍ୟ ସର୍ଜନାତ୍ମକ ସମୀକ୍ଷା ଲାଗି ଅନ୍ତଃପ୍ରବେଶ କରିବାକୁ ହୁଏ । ଯୋଗ ଶାସ୍ତ୍ରରେ ଯାହାକୁ 'ପରକାୟପ୍ରବେଶ' ବୋଲି କୁହାଯାଇଛି, ଏହା ପ୍ରାୟ ସେହିପରି ଗୋଟିଏ କଥା । ଜୀବନ ସହିତ ଏକାତ୍ମକ ହୋଇପାରିଲେ ଯେପରି ଯଥାର୍ଥ ସାହିତ୍ୟ ସମ୍ଭବ ହୁଏ, ସର୍ଜନାତ୍ମକ ସମୀକ୍ଷା ଲାଗି ସେହିପରି ସୃଜନଟି ସହିତ ଏକାତ୍ମକ ହେବାକୁ ହୁଏ । ସୃଜନଟିର ପଛରେ ପରୋକ୍ଷ ଅଥବା ପ୍ରାଞ୍ଜଳ ହୋଇ ରହିଥିବା ସାହିତ୍ୟକାରକୁ ଯାଇ ଏକାନ୍ତ ଆତ୍ମୀୟ ପରି ଭେଟିବାକୁ ହୁଏ । ତାର ସୃଜନ-ପଥଟିକୁ ନିଜ ଭିତରେ ଅନୁଭବ କରିବାକୁ ହୁଏ । ତାକୁ ତାର ଦେଶ ଏବଂ କାଳଠାରୁ ଅଲଗା କରି କେବଳ ଏକ ଏକକ ବୃହତ୍ତରକୁ ରୂପେ ଦେଖିଲେ ମୋଟେ ସମୀକ୍ଷା ହୁଏନାହିଁ । ଆପଣାର ନାନା ପୂର୍ବଗ୍ରହ ଦ୍ୱାରା ପରିଚାଳିତ ହୋଇ କେବଳ ଆଡ଼ମ୍ବରମସ୍ତ

ନନ୍ଦା ଅଥବା ଅଯୌକ୍ତିକ ପ୍ରଶଂସାକର ପକାଇଲେ ମଧ୍ୟ ସମୀକ୍ଷା ହୁଏନାହିଁ । ଆଲୋଚ୍ୟ ସାହିତ୍ୟକକୁ କୌଣସି ଏକ ସ୍ଥାନୀୟ ଅଥବା କାଳାଧୀନ ବ୍ୟୂହ ଭିତରେ ଆଣି ଖଞ୍ଜିଦେଲେ କିମ୍ବା ତାଙ୍କୁ ଅମୁକଙ୍କଠାରୁ ବଡ଼ କିମ୍ବା ଅମୁକଙ୍କ ଠାରୁ ସାନ ବୋଲି କହିଲେ ସର୍ଜନାତ୍ମକ ସମୀକ୍ଷା ମୋଟେ ହୁଏନାହିଁ । ସେଥିଲାଗି, ଯେଉଁ ମେଦଜ ଧାରଣାଟି ମଧ୍ୟରେ ସାହିତ୍ୟକାର ଆପଣାର ସାହିତ୍ୟଦୃଷ୍ଟିକୁ ନେଇ କାରବାର ହେବାକୁ ମନ କରିଛନ୍ତି, ସେଇଟିକୁ ଆବିଷ୍କାର କରିବାକୁ ହୁଏ । ସେଇଟିର ସମଗ୍ର ଯାଥାର୍ଥ୍ୟଟିକୁ ସ୍ୱୟଂ ଅନୁଭବ କରିବାକୁ ହୁଏ । ଆପଣାର ମେଦଜଟି ସତ୍ୟତ ସିଏ କେତେ ଦୂର ଏକାତ୍ମକ ହୋଇପାରିଛନ୍ତି କି ନାହିଁ, ଅର୍ଥାତ୍ ତାହାର ସମଗ୍ର ଆବେଦନଗତ ବୋଧଟି ସତ୍ୟତ ସିଏ ଆପଣାକୁ ମଧ୍ୟ ଅନୁରୂପ ଭାବରେ ବସ୍ତୁଗତ କରିଦେଇ ପାରିଛନ୍ତି କି ନାହିଁ, ସେଗୁଡ଼ିକୁ ନିଷ୍ଫଳ ଭାବରେ ଅଥଚ ଏକ ପୂର୍ଣ୍ଣ ଶ୍ରଦ୍ଧା ସହକାରେ ସବା ଆଗ କଳି ନେବାକୁ ହୋଇଥାଏ । ସିଏ ଅଧିକ କହିବେ ବୋଲି ଅର୍ଥାତ୍ ଅଧିକ ସତ୍ୟତ ଆମର ସ୍ପର୍ଶ କରାଇ ଦେବେବୋଲି ଏକ ପ୍ରତୀତ ଦେଇ ଅଳପ କହି କାମସାରି ଦେଇଛନ୍ତି ଅଥବା ନିତାନ୍ତ ଅଳପକୁ ଟେରେଇ, ଫେଣେଇ ଓ ଛେଦରେଇ ଆମକୁ ତାହାକୁହିଁ ଅଧିକ ବୋଲି ଭୁଲାଇ ଦେବାକୁ ପ୍ରୟାସ କରିଛନ୍ତି କି ନାହିଁ, ଅସଲ ସମୀକ୍ଷାରେ ସବାଆଗ ସେଇଟିକୁ ଠଉରାଇ ପାରିବାକୁ ହୁଏ । ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷାକୁ ସ୍ରଷ୍ଟା ସାହିତ୍ୟ ତଥା ସାହିତ୍ୟକର ଅସଲ ଆକାଙ୍କ୍ଷାଗତ ସ୍ତିପରିଧି ଗୁଡ଼ିକୁ ଆବିଷ୍କାର କରିବାକୁ ପଡ଼େ । ସେହି ପରିଧିଗୁଡ଼ିକର ସେପାଖରେ ଅଥଚ ସେଗୁଡ଼ିକୁ ସ୍ପର୍ଶକରି ଏକ ବୃହତ୍ତର ଅଭିବ୍ୟଞ୍ଜନାର ଯେଉଁ ସମ୍ଭାବ୍ୟ ଅନ୍ୟ ପରିଧିଗୁଡ଼ିକ ରହିଛି, ସେହି ଗୁଡ଼ିକର ପରିପ୍ରେକ୍ଷୀରେ ହିଁ ତାଙ୍କୁ ପ୍ରସ୍ତୁତ ସାହିତ୍ୟଟିର ସମୀକ୍ଷା କରିବାକୁ ପଡ଼େ । ଅର୍ଥାତ୍, ଏକ ବୃହତ୍ତର ବୃତ୍ତ-ପରିମଣ୍ଡଳର ପରିପ୍ରେକ୍ଷୀରେ ତାଙ୍କୁ ପ୍ରସ୍ତୁତ ବୃତ୍ତଟିର ସମୀକ୍ଷା କରିବାକୁ ପଡ଼ିଥାଏ ।

ସମ୍ଭବତଃ ଠିକ୍ ଏଇଠାରେ ହିଁ, ସାହିତ୍ୟର ସମୀକ୍ଷା କରୁ କରୁ ସେହି ସାହିତ୍ୟକୁ ରଚନା କରିଥିବା ସାହିତ୍ୟକଟିକୁ ମଧ୍ୟ ସତେ ଅବା ଆପେ ଟାଣିହୋଇ ଆସି ସମ୍ମୁଖରେ ହାଜର ହୋଇଯାଏ । କହିବା ଭିତରେ ଅବ-

ଗାହିବାକୁ ଯାଇ କବି ସହିତ ବି ଭେଟହୁଏ । ନାଟକଟିଏ ଦେଖୁ ଦେଖୁ
ନଜେ ନାଟ୍ୟକାର ଆସି ହାତୁଡ଼ରେ ମନ୍ତ୍ରଯାଆନ୍ତି । ଗଳ୍ପ ଓ ଉପନ୍ୟାସ
ମଧ୍ୟରେ ଗଳ୍ପକାର ଏବଂ ଉପନ୍ୟାସକାର ବି ଆସି ସମୀକ୍ଷାର କାଠିଗୁଡ଼ିକ
ଭିତରେ ପଶିଯିବାକୁ ଆରମ୍ଭ କରନ୍ତି । କୁମ୍ଭକାର ବାହାରୁ ମାଟି ଆଣେ,
ମାତ୍ର ସେହି ମାଟିକୁ ଦେଇ ସିଏ ଯାହାକିଛି ଗଢ଼େ, ତଦ୍ଦ୍ୱାରା ସିଏ ଆପଣାକୁ
ହିଁ ଅଭିବ୍ୟକ୍ତ କରିଦେଇଥାଏ । ଶିଳ୍ପୀ ଆପଣାର ଶିଳ୍ପ ମଧ୍ୟରେ ଆପଣାର
ଅନନ୍ୟ ହାତଟିକୁ ହିଁ ଅଭିବ୍ୟକ୍ତ କରିଥାଏ । ଏବଂ ଜଣେ ସାହିତ୍ୟକାର ମଧ୍ୟ
ଆପଣାର ଯାବତୀୟ ରଚନା ଭିତରେ ଆପଣାକୁହିଁ ବ୍ୟକ୍ତ କରେ । ଆପଣାକୁହିଁ
ବ୍ୟକ୍ତ ଓ ଉନ୍ମୋଚିତ କରିଦେଇଥାଏ । ସେ ଜନନୀ ହୋଇ ଆପଣାକୁ
ବାରବାର ଜନ୍ମ ଦେବାରେ ଲାଗିଥାଏ, ବେଦର ନବ ନବ ଜାୟତେ
ଜାୟମାନ' ମନ୍ତ୍ରଟିକୁ ସାର୍ଥକ କରିବାରେ ଲାଗିଥାଏ । କୁମ୍ଭାରର ମାଟି
ଦରକାର ହେଉଥିବାପରି ସାହିତ୍ୟକାରର ମଧ୍ୟ ଭାଷାଟିଏ ଦରକାର
ହୁଏ, ଏକ ଐତିହ୍ୟ ଭୂମି ଦରକାର ହୁଏ । ଶୈଳୀଟିଏ ଖୋଜିବାକୁ
ପଡ଼େ ଓ ଆପଣାର ନିଜସ୍ୱ ଭୂମିଟିଏ ପାଇବା ପୂର୍ବରୁ ତାକୁ ଅମାପ
ଓ ଅଦମ୍ୟ ଭାବରେ କେତେ ଅଧ୍ୟୟନ ବି କରିବାକୁ ପଡ଼େ, ହୁଏତ
ଆପଣାର ଚାରିପାଖରୁ ସହଗାମୀ ସମଧର୍ମୀମାନଙ୍କଠାରୁ କେତେ ନା କେତେ
ଅନୁପ୍ରେରଣା ଲାଭ କରିବାକୁ ପଡ଼େ ଏବଂ ବେଳେବେଳେ କାହାରି
ଅନୁକୃତିକୁ ମଧ୍ୟ ବାଟ ଛାଡ଼ିଦେବାକୁ ପଡ଼େ; ମାତ୍ର ଏହି ସବୁକିଛିର ପଛରେ
ଆପଣାକୁ ଅନନ୍ୟ ଓ ସ୍ୱତନ୍ତ୍ରନିବେଦିତ ଭାବରେ ବ୍ୟକ୍ତ କରିବା ହିଁ ଏଠି
ଶେଷରେ ସର୍ବମୁଖ୍ୟ ଚର୍ଯ୍ୟା ଏବଂ ସ୍ମରଣୀ ହୋଇ ରହିଥାଏ । ସର୍ଜନାତ୍ମକ
ସମୀକ୍ଷା ସେହି ଚର୍ଯ୍ୟାଟିର ହୃଦୟଟିକୁ ଆବିଷ୍କାର କରିବ, ସେହି ସ୍ମରଣୀର
ସ୍ୱକୀୟ ବାସନାଟିକୁ ହିଁ ବାରିନେଇ ପାରିବାକୁ ସମର୍ଥ ହେବ । ଅନେକ
ସମୀକ୍ଷା କେବଳ ଭାଷାରେ ଓ ଶୈଳୀରେ ରହିଯାଏ, ଇତିହାସ ଏବଂ ଉତ୍ସ
ଗୁଡ଼ାକର ଶିର କାଢ଼ି କାଢ଼ି ତାହା ବୁଢ଼ା ହୋଇଯାଏ, ପାଚେରି ବାହାରେ
ରହିଯାଏ; ବାଣ, ରୋଷନ ଆଉ ଫାନୁସଗୁଡ଼ାକ ଦେଖୁଦେଖୁ ସିଏ ପରିଚୟ
ଲେଡ଼ୁଥିବା ବରଟିକୁ ହିଁ ଦେଖିବାକୁ ଭୁଲିଯାଏ, ପାଣ୍ଡିତ୍ୟ ଓ ପଣ୍ଡିତାଇ
ଗୁଡ଼ାକର ବାରତା ନେଇ ନେଇ ସାହିତ୍ୟକାର ଭିତରେ ରହିଥିବା ସ୍ରଷ୍ଟାଜନ

ଓ ଲେଖକର ଅସଲ ହୃଦୟଟିକୁ ପାସୋର ପକାଏ । ଅସଲ ମୁହଁଟିକୁ ଲୁଚାଇ ରଖିବାକୁ ମନ କରି ଯେପରି ମୁଖା ପିନ୍ଧିବାକୁ ପଡେ, ପ୍ରାୟ ଠିକ୍ ସେହିପରି ଜଣେ ସାହିତ୍ୟିକ ମଧ୍ୟ ଆପଣାର କେତେ କ'ଣ ଲୁଚାଇବାକୁ ମନ କରି ସାହିତ୍ୟର ମୁଖା ପିନ୍ଧି ବସିବାକୁ ମନ କରିପାରେ । ସଂସାରର ଜ୍ୱାଳନଗୁଡ଼ାକୁ ଭୁଲିବା ସକାଶେ ଅନେକ ମଣିଷ ଯେପରି ଠାକୁରଙ୍କ ପାଖକୁ ପଳାଇ ଯାଆନ୍ତି, ନିଜର ଜୀବନରେ ମୂଳଭୂତ ଅନେକ ଅସମର୍ଥତା ଓ ଅନେକ ଆହ୍ୱାନର ସମ୍ମୁଖୀନ ହୋଇ ନପାରି ଜଣେ ସାହିତ୍ୟିକ ବି ସେହିପରି ତାର ସାହିତ୍ୟକୁ ଆଶ୍ରା କରି ବେଶ୍ ରହି ଯାଇପାରେ । ବାହାରର ବ୍ୟାଧିଗୁଡ଼ାକୁ ଉଜ୍ଜ୍ୱଳ ଏବଂ ପୁଷ୍କଳ କରି ଦେଖାଇ ସିଏ ଆପଣା ଭିତରେ ରହିଥିବା ପ୍ରାୟ ଠିକ୍ ସେହି ବ୍ୟାଧିଗୁଡ଼ାକ ଲାଗି ହୁଏତ ଏକ ଆତୁର କ୍ଷତିପୂରଣ ବି ଲୋଡ଼ିବାକୁ ମନ କରିପାରେ । ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା ଏଗୁଡ଼ାକୁ ବି ଦେଖିବ । ହୁଏତ ଆଗ ଏହିଗୁଡ଼ାକୁ ହିଁ ଦେଖି ଏହି ଜିଜ୍ଞାସାର ଭୂମି ଉପରେ ତାହା ଭାଷା, ଶୈଳୀ, ଚତୁରାଇ ଏବଂ ପଣ୍ଡିତାଇ ଗୁଡ଼ାକର ବିଚାର କରିବ ।

ସାହିତ୍ୟର ଅଧିକାଂଶ ସମୀକ୍ଷା ଏହି କଥାଟିକୁ ପ୍ରାୟ ମୋଟେ କରି ପାରିନାହିଁ । ଜୀବନର ଅଧିକାଂଶ ସମୀକ୍ଷା ବି ତାହା କରି ପାରିନାହିଁ । ସାହିତ୍ୟକୁ ଏକ ବିଶେଷ ଧନ୍ଦା ବୋଲି ଧରିନେଇ ତାହା ସାହିତ୍ୟର ବ୍ୟକ୍ତିଟିକୁ ଜୀବନଠାରୁ ଦୂରଛଡ଼ା କରି ରଖିଦେଇଛି ଓ ଏକାନ୍ତ ବିଚ୍ଛିନ୍ନ ଭାବରେ ତାହାର ବିଚାର କରିବାକୁ ଯାଇଛି । ଜୀବନର ଆଲୋଚନାରେ ଜୀବନର ଲେଖକ ସହାୟକ ହୋଇ ପାରିନାହିଁ । ସାହିତ୍ୟର ସମୀକ୍ଷା ନାନା କାରଣରୁ ଆପଣାକୁ ଆପଣାର ଯଥାର୍ଥ କ୍ଷେତ୍ରଗୁଡ଼ିକରୁ ଅପସରାଇ ନେଇ ଉଡ଼ୁଆଳରେ ରଖିଛି । ଆଗେ ସାହିତ୍ୟ ଓ ତାହାର ଯାବତୀୟ ବିଚାର ସଭା ଭିତରେ ଉଡ଼ୁଆଳ ହୋଇ ରହିଥିଲା. ଲୋକଭାଷା ଠାରୁ ଅନେକ ଦୂରରେ ଏକ ଶାସ୍ତ୍ରଭାଷା ଭିତରେ ଉଡ଼ୁଆଳ ଏବଂ କୁଣ୍ଠିତ ହୋଇ ରହିଥିଲା । ଏବଂ ଆଧୁନିକ ସାମନ୍ତବାଦୀ ସମାଜରେ ସାହିତ୍ୟ ତଥାକଥିତ ଭାଗ୍ୟବାନ୍ ଦେବଗୋଷ୍ଠୀମାନଙ୍କ ଭିତରେ ଉଡ଼ୁଆଳ ହୋଇ ରହିଛି, ନିଜକୁ ବୃହତ୍ତର ଜୀବନର ଅନେକ ଆଲୋଚନାରୁ ଭାରି କୁଣ୍ଠିତ ଭାବରେ ବର୍ଜିତ କରି ରଖିଛି ।

ଏହି ଦୃଷ୍ଟିରୁ ବିଚାର କରି କେହି କେହି ସାହିତ୍ୟସମୀକ୍ଷାକୁ ଏକ ବିଳାସମୟ ଅମିତବ୍ୟୟିତା ଓ ଏପରିକି ଏକ ବିଫଳତା ବୋଲି ମଧ୍ୟ କହିଲେଣି । କେବଳ ସାହିତ୍ୟନାମକ ଏକ ବିଶେଷ କ୍ଷେତ୍ରର ନୁହେଁ, ସମଗ୍ର ଭାବରେ ଯାବତୀୟ ସମୀକ୍ଷାର ଏକ ସାଧାରଣ ଦଶା ବିଷୟରେ ଆଲୋଚନା କରି କାର୍ଲ୍ ମାର୍କ୍ସ ଗୋଟିଏ ଜାଗାରେ କହିଛନ୍ତି, "ବେଡ଼ୀ ଆଉ ଜଞ୍ଜିର ଗୁଡ଼ାକ ଭିତରୁ ସମୀକ୍ଷା ଯେ କାଳ୍ପନିକ ପୁଷ୍ପଗୁଡ଼ିକରେ ଚୟନ କରି ଆସିଛି, ମଣିଷ ଯେ ସମ୍ପୂର୍ଣ୍ଣ କଳ୍ପନାରହିତ ଓ ଅଶାନ୍ତ ଭାବରେ ସେହି ଜଞ୍ଜିର ଗୁଡ଼ାକୁ ଆପଣା ଉପରେ ବହନ କରି ରହିବ, ସମୀକ୍ଷା ସେହି ଉଦ୍ଦେଶ୍ୟରେ ସେକଥା କଦାପି କରିନଥିବ । ମଣିଷ ଯେ ଦିନେ ନା ଦିନେ ଆପଣା ଉପରୁ ଯାବତୀୟ ଜଞ୍ଜିର ଓ ବେଡ଼ୀଗୁଡ଼ାକୁ କାଟି ଫୋପାଡ଼ି ଦେବ ଓ ପ୍ରକୃତ ଫୁଲଗୁଡ଼ିକର ଚୟନ କରିପାରିବ, ସମୀକ୍ଷାର ସମ୍ମୁଖରେ ସବୁବେଳେ ସେହିପରି ଏକ ଉଦ୍ଦେଶ୍ୟ ରହି ପାରୁଥିବା ଉଚିତ ।" ସର୍ଜନାତ୍ମକ ସମୀକ୍ଷା ସାହିତ୍ୟରୂପୀ କୌଣସି ଏକ ପୁଷ୍ପବାଟିକାର ସ୍ୱପ୍ନ ଦେଖାଇ ଆମ ଜୀବନର ଦୁର୍ବହ ବେଡ଼ୀ ଗୁଡ଼ାକୁ କିଛି ସମୟ ଲାଗି ସୁବହ ବୋଲି ଅନୁଭୂତ କରାଇବା ଲାଗି ଆଦୌ କୌଣସି ଚେଷ୍ଟା କରିବନାହିଁ । ଏକ ବ୍ୟାଧିତ ସମାଜରେ ଯେଉଁଠି ସାହିତ୍ୟ ମଧ୍ୟ ବ୍ୟାଧିତ ହୋଇ ରହିବାକୁ ହିଁ ସଫଳତାର ଏକ ସହଜ ଗୃବ ବୋଲି ଗ୍ରହଣ କରି ନେଉଛି, ସର୍ଜନାତ୍ମକ ସମୀକ୍ଷା ସେହି ସ୍ଥଳରେ ବ୍ୟାଧିଗୁଡ଼ାକୁ କେବଳ ବ୍ୟାଧି ବୋଲି ହିଁ କହିବ, ବ୍ୟାଧିଗୁଡ଼ାକର ସମ୍ମୁଖୀନ ହୋଇ ପାରୁଥିବା ଏକ ସ୍ୱାସ୍ଥ୍ୟବାସନାର ଉଦ୍‌ବୋଧନ ଦେବ, ହୃଦୟ ଭିତରେ ସୁସ୍ଥତା ଲାଗି ଏକ ଅଭୀପ୍ସା ଜନ୍ମାଇବ, ସେହି ସୁସ୍ଥତାର ଭାଜନ ହେବାଲାଗି ସ୍ଥାୟୀଭାବ ରୂପେ ଆମ ଭିତରେ ଏକ ସାହସର ସଞ୍ଚାର କରାଇ ପାରୁଥିବ ।

ଯଦି ସାହିତ୍ୟ ସବୁରୁ ବାହାରି ସବୁ ମଣିଷ ଏବଂ ସମଗ୍ର ଜୀବନଲାଗି ଉଦ୍ଦିଷ୍ଟ ଏକ ବସ୍ତୁସମ୍ପଦ ରୂପେ ସ୍ୱୀକାର ଲାଭ କରେ, ତେବେ ପ୍ରତ୍ୟେକ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା ମଧ୍ୟ ତଥାକଥିତ ଶୁଦ୍ଧ ସାହିତ୍ୟାଲୋଚନାର ବାଡ଼ଗୁଡ଼ିକୁ ଡେଇଁ ଯିବାଲାଗି ବି ସମର୍ଥ ହେବ । ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷକ ନିଜର ଦୃଷ୍ଟି ତଥା ବିଚାରକାଠିଗୁଡ଼ିକୁ ଅଧିକରୁ ଅଧିକ ସମଗ୍ର

କରିପାରିବାଲାଗି ଉଦ୍ୟମୀ ହୋଇ ରହିଥିବ । କଳାର 'କଳାପାଇଁ କଳା' ଓ ସାହିତ୍ୟର ସାହିତ୍ୟ ଲାଗି ଅର୍ଥାତ୍ ଖାଣ୍ଟି ସାହିତ୍ୟ ରସିକମାନଙ୍କ ଲାଗି 'ସାହିତ୍ୟ'ର ପଙ୍କ୍ତିକୁ ଗଣ୍ଡି କରି ରଖିଲେ ସାହିତ୍ୟ ସମୀକ୍ଷାର ଜୀବନବାଚୀ ଅଙ୍ଗଟି ପ୍ରକୃତରେ ଖୁବ ଝୁଡ଼ୁମ୍ବିତ ହୋଇ ରହିଯିବ । ସାହିତ୍ୟ ଭାଷା ଦେଇ ଗଢ଼ା ହୋଇଥାଏ ସତ, ମାତ୍ର ବାହାରେ ରହିଥିବା ଆମ ବୃହତ୍ତର ପୃଥିବୀଟି ସହିତ ସାହିତ୍ୟର ପ୍ରେରଣା ଏବଂ ପ୍ରଭାବର ନାଡ଼ୀଗୁଡ଼ିକ ସର୍ବଦା ଲାଗିକରି ରହିଥାଏ । ତେଣୁ କେବଳ ଭାଷା ମଧ୍ୟରେ ହିଁ ସୀମିତ ହୋଇ ରହିଥିବା ବ୍ୟୁତ୍ପତ୍ତିଗୁଡ଼ାକ ଦ୍ୱାରା କଦାପି ସାହିତ୍ୟର ଯଥାର୍ଥ ସମୀକ୍ଷା କରାଯାଇ ପାରିବନାହିଁ । ସାହିତ୍ୟ ଭିତରେ ଆମେ ଯେଉଁ ଆବେଦନଟିକୁ ସର୍ବମୁଖ୍ୟ କରି ଖୋଜିବାକୁ ମନ କରିବା; ମନୁଷ୍ୟ, ସମାଜ ଓ ପ୍ରକୃତି ସହିତ ରହିଥିବା ତାହାର ସମ୍ପର୍କଗତ ସଂଗତିଗୁଡ଼ିକୁ ହିଁ ଆମେ ତାହା ମଧ୍ୟରେ ଅବଶ୍ୟ ଖୋଜିବାକୁ ଯିବା । ଜଣେ ଆଧୁନିକ ସମୀକ୍ଷାଶାସ୍ତ୍ରୀ **Rene' wellek**ଙ୍କ ଭାଷାରେ କହିବାକୁ ଗଲେ, ଏକ କଳାକୃତି ବା ସାହିତ୍ୟ କୃତିର ସମଗ୍ର ବିଶ୍ଳେଷଣ ତଥା ମୂଲ୍ୟାୟନହିଁ ସମୀକ୍ଷାର ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ହୋଇ ରହିବା ଉଚିତ । ୩ । କାରଣ, ତାଙ୍କର କଥାରେ, 'ସାହିତ୍ୟ ହେଉଛି ଏକ କଳାସୃଷ୍ଟିର ସାମଗ୍ରୀ, ଏବଂ ଏକ ନିର୍ଦ୍ଦିଷ୍ଟ ଇତିହାସ ଓ ସମାଜ ଭିତରେ ହିଁ ତାହାର ଏକ ଅସ୍ତିତ୍ୱ ରହିଛି ।'' ସର୍ଜନାତ୍ମକ ସମୀକ୍ଷା ସାହିତ୍ୟର ଅବଲୋକନ କରିବାକୁ ଯାଇ ତା' ଭିତରେ ଇତିହାସକୁ ଖୋଜିବ, ସମାଜକୁ ଖୋଜିବ, ଅର୍ଥାତ୍ ଏକ ସୃଜନଶୀଳ ଆଖିରେ ସମଗ୍ର ଜଗତଟିକୁ ଅନୁଭବ କରୁଥିବା ସାହିତ୍ୟକାରର ଯେଉଁ ଜଗତ ବା ଜୀବନ ପ୍ରସାରଟି ସହିତ ପ୍ରକୃତରେ ଯେଉଁ ସମ୍ପର୍କ ରହିଛି, ସିଏ ସେହି କଥାଟିର ସୂତ୍ର ପାଇବାକୁ ଅଭିଳାଷ ରଖିଥିବ ।

ଭାରତୀୟ ଆଞ୍ଚଳିକ ସାହିତ୍ୟ ଗୁଡ଼ିକରେ ଯେମିତି ଏକ ଜାତୀୟତାବାଦୀ ସାହିତ୍ୟଯୁଗ ରହିଛି; ସାହିତ୍ୟ ସମୀକ୍ଷାର କ୍ଷେତ୍ରରେ ମଧ୍ୟ ଠିକ୍ ସେହିପରି ଏକ ଜାତୀୟତା ଦୃଷ୍ଟ ସମୀକ୍ଷାର ଯୁଗପର୍ଯ୍ୟାୟ ବି ରହିଛି । ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଭାରତୀୟ ସାହିତ୍ୟର ମଧ୍ୟ ଯେ ଏକ ମହନୀୟ ଅବଦାନ

ରହିଛି, ସେକଥା ସମସ୍ତେ ଅବଶ୍ୟ ସ୍ୱୀକାର କରିବେ । ଭାରତୀୟ ଆଧୁନିକ ନବଜାଗରଣର ତିନି ପୁରୋଧା; ରବୀନ୍ଦ୍ରନାଥ, ମହାତ୍ମାଗାନ୍ଧୀ ଏବଂ ଶ୍ରୀ ଅରବିନ୍ଦ ସମସ୍ତେ ସାହିତ୍ୟିକ ଥିଲେ । ଭାରତବର୍ଷର ସାହିତ୍ୟ ଲାଗି ତାହା ପ୍ରକୃତରେ ଏକ ବଡ଼ ଗର୍ବର କଥା । ମାତ୍ର ସେମାନେ କୌଣସି ସଂକୀର୍ଣ୍ଣ ଅର୍ଥରେ ମୋଟେ ଜାତୀୟତାବାଦୀ ନ ଥିଲେ । ଆଞ୍ଚଳିକ ପ୍ରେରଣାଗୁଡ଼ିକ ଆସି ଭାରତରେ ଏହି ସ୍ୱଦେଶପ୍ରୀତି କ୍ରମେ ପ୍ରାୟ ଏକ ଅଞ୍ଚଳମୋହରେ ପରିଣତ ହୋଇଛି ଏବଂ ତାହା ଏକ ବିଶେଷ ପ୍ରକାରର ସାହିତ୍ୟକୁ ମଧ୍ୟ ଜନ୍ମ ଦେଇଛି । ଏକ ଜନସମୂହ ହିସାବରେ ଭାରତବର୍ଷ ଆପଣାର ସ୍ୱୀକୀୟ ପିଣ୍ଡ ଏବଂ ପଥଟିକୁ ଖୋଜୁଥିବାର ଏହି ପର୍ଯ୍ୟାୟରେ ବର୍ତ୍ତମାନ ମଧ୍ୟ ସେହି କେତେ ଆଞ୍ଚଳିକ ସାହିତ୍ୟମାନଙ୍କୁ ଭରି ଗ୍ରାସ କରି ରଖିଛି । ତାହାର ଆନୁଷଙ୍ଗିକ ଭାବରେ ଏକ ଜାତୀୟତା ଦୃଷ୍ଟ ସାହିତ୍ୟ ସମୀକ୍ଷା ମଧ୍ୟ ଉଧେଇବା ସକାଶେ ଭଲ କ୍ଷେତ୍ର ପାଇଛି ଏବଂ ତାହା ଆମ ସାହିତ୍ୟ ଦୃଷ୍ଟିର ଆକାଶଗୁଡ଼ାକୁ ଅତ୍ୟନ୍ତ ଆବିଳ ଏବଂ ଆଚ୍ଛନ୍ନ କରିପକାଇଛି । ସର୍ଜନାତ୍ମକ ସମୀକ୍ଷା ଏଗୁଡ଼ାକର ଅନେକ ବାହାରେ । ସର୍ଜନାତ୍ମକ ସାହିତ୍ୟ ସମୀକ୍ଷାର ଚକ୍ଷୁରେ ଜାତୀୟତାବାଦୀ ସାହିତ୍ୟ; ଆଗ ସାହିତ୍ୟ, ତା'ପରେ ଆଉ ଯାହା କହ । ସିଏ ତାହାକୁ ମୂଳତଃ ସାହିତ୍ୟ ରୂପେ ହିଁ ବିଚାର କରିବ । ତାହାର ସାହିତ୍ୟ ଭାଗକୁ ତାହାର ଅସୁସ୍ଥ ଭାଗ ଓ ତାହାର ଅଳ୍ପପ୍ରୀତିର ଭାଗଠାରୁ ଅଲଗା କରି ରଖିବ । ଆଧୁନିକ ସାହିତ୍ୟଦୃଷ୍ଟିର ବଳୟଗୁଡ଼ାକ ଜାତୀୟତାବାଦୀ ପ୍ରମତ୍ତ ଗାରଗୁଡ଼ାକୁ କୋଉଦିନୁଁ ଡେଇଁ ବାହାରି ଆସିଲାଣି । ସାହିତ୍ୟ-ସମୀକ୍ଷାରେ ଏକ ବୈଜ୍ଞାନିକ ସମଗ୍ର ଦୃଷ୍ଟି ଆସି ପଶିବା ଦିନଠାରୁ ସମୀକ୍ଷା ସେହି ମୋହାବରଣ ଗୁଡ଼ିକୁ ପରିହାର କରି ପାରିଲାଣି । ଆମ ତୋଟାରେ ଯେତିକି ଆମ୍ବ ଫଳେ, ସେସବୁ କେବଳ ଆମର, ଆମ ଜାତିର, ଆଉ ମୋଟେ କାହାର ନୁହେଁ— ଉଲ୍ଲସିତ ଅନୁଭବ କରିବାର ଏହି ପ୍ରବୃତ୍ତି ଲାଗି ସର୍ଜନାତ୍ମକ ସମୀକ୍ଷା ଭିତରେ ଏବେ ଆଉ କୌଣସି ସ୍ଥାନ ରହୁନାହିଁ । ଯେଉଁ ୱେଲେକ' wellek ଭାଷାରେ କହିଲେ, ବିଶ୍ୱସାହିତ୍ୟ ଏବଂ ଜାତୀୟ ସାହିତ୍ୟ ବର୍ତ୍ତମାନ ଆଉ ପରସ୍ପରଠାରୁ ବିଚ୍ଛିନ୍ନ ଭାବରେ ଦୁଇଟା ଅଲଗା ଅଲଗା ବିଚରଣଭୂମି ହୋଇ ମୋଟେ ରହି ନାହାନ୍ତି, ସେମାନେ ଉଭୟେ ପରସ୍ପରର ଅନ୍ତର୍ଗତ ହୋଇ ରହିଛନ୍ତି ।[୨]

ଯଥାର୍ଥରେ ଉଚ୍ଚ ଏବଂ ବୃହତ୍ ସାହିତ୍ୟର ଯେପରି କୌଣସି ଜାତି ନାହିଁ, ଜଣେ ଯଥାର୍ଥ ସାହିତ୍ୟିକାର ଯେପରି ଏକ ସ୍ୱତନ୍ତ୍ର ତାରକା ରୂପେ ସକଳ ଜାତିଗତ ପରିଚୟର ବ୍ୟବଧାନ ରେଖା ଗୁଡ଼ାକୁ ଅସ୍ୱୀକାର କରି ଆକାଶ ବକ୍ଷରେ ସମସ୍ତଙ୍କର ପ୍ରିୟ ବସ୍ତୁଟିଏ ହୋଇ ଜଳିବାରେ ଲାଗିଥାଏ ଓ ଅନେକ ସମୟରେ ଜାତିଗତ ସ୍ଥାନୀୟତାର ଯାବତୀୟ ଆତ୍ମକେନ୍ଦ୍ରିକତା ବିରୁଦ୍ଧରେ ଯେପରି ପ୍ରାୟ ଏକ ପ୍ରତିବାଦ ଘୋଷଣା କରୁଥାଏ, ସର୍ଜନାତ୍ମକ ସାହିତ୍ୟସମୀକ୍ଷାକୁ ମଧ୍ୟ ସେହିପରି ଯାବତୀୟ ଜଳାଶୟନ୍ୟାୟରୁ ଆପଣାକୁ ଉନ୍ମୁକ୍ତ କରି ରଖିବାକୁ ପଡ଼େ, ପ୍ରାୟ ଜାଣିଶୁଣି ଜାଣିଶୁଣି ଜାତି ଗ୍ରହିବାକୁ ପଡ଼େ । ସର୍ବଜନକେନ୍ଦ୍ର ହେବାକୁ ପଡ଼େ । ***Nihil humani alienum***— ଯାହା କିଛି ମଣିଷର ଜୀବନବ୍ୟାପାରକୁ ସ୍ପର୍ଶକରି ରହିଛି, ତାହା ଯେ କୌଣସି ଜନପଦ କିମ୍ବା ଯେକୌଣସି ଜଳବାୟୁର ହୋଇଥାଉ ପଛକେ, ମୁଁ ତାହାକୁ ନିଜଠାରୁ କଦାପି ବିଚ୍ଛିନ୍ନ କରି ରଖିପାରିନାହିଁ ଓ ଆଦୌ ଅନ୍ୟଦେଶୀ ପରି ଭାବିବ ନାହିଁ, ସର୍ଜନାତ୍ମକ ସମୀକ୍ଷା ଏଇଟିକୁ ମୂଳ ବିଧାନ ରୂପେ ମାନୁଥାଏ । ମାନବ ସମାଜ ତା'ର ମାନବିକତାର ସୋପାନରୁ ଜାତୀୟତାର ବାଟ ଦେଇ କ୍ରମେ ଏକ ପଶ୍ଚାତ୍ମୁଖୀ ବର୍ବରତାର ସ୍ତରକୁ ଖସିଆସିଛି ବୋଲି ମାନବ— ଇତିହାସରେ କାର୍ଯ୍ୟ କରି ଆସିଥିବା ସାମୂହିକ ପ୍ରବୃତ୍ତିଗୁଡ଼ିକର ଜଣେ ଇଉରୋପୀୟ ସମୀକ୍ଷକ ମତ ପ୍ରକାଶ କରିଛନ୍ତି । ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା କୌଣସି କାରଣର ଦୋହାଇ ଦେଇ ମଧ୍ୟ ଏହି ପ୍ରକ୍ରିୟାଟିରେ ଆପଣାକୁ ଭାଗୀ କରିବାକୁ ଯିବନାହିଁ । ତାହା ଅନ୍ଧାରଗୁଡ଼ାକୁ ଅନ୍ଧାର ବୋଲି ଦର୍ଶାଇଦେବ, ପ୍ରମତ୍ତତାକୁ ପ୍ରମତ୍ତତା ବୋଲି କହିବ, ଜୀବନର ସତ୍ୟାନ୍ୱେଷଣତାକୁ ସକଳ ପ୍ରକାରେ ମୋହମୁକ୍ତ କରି ରଖିବାଲାଗି ସିଏ ଯେକୌଣସି ବଳବାନ୍ ଆଗରେ ମଧ୍ୟ ତଥାପି ଭୀତ ନ ହେବାକୁ ମନ୍ତ୍ରରୂପେ ଗ୍ରହଣ କରି ନେଇଥିବ ।

ଏହି ଶତାବ୍ଦୀର ଦ୍ୱିତୀୟ ଦଶକରେ ଶ୍ରୀ ଅରବିନ୍ଦ 'ଭବିଷ୍ୟତର କାବ୍ୟ' ନାମରେ ଏକ ସାହିତ୍ୟ ସମୀକ୍ଷାର ଗ୍ରନ୍ଥ ଲେଖି ଯାଇଅଛନ୍ତି । ପାରମ୍ପରିକ ସାଧାରଣ ଅର୍ଥରେ ଶ୍ରୀ ଅରବିନ୍ଦ ଉଭୟ ଥିଲେ; ସିଏ ନିଜେ ସାହିତ୍ୟ ସ୍ରଷ୍ଟା ଥିଲେ ଓ ଅପର ପକ୍ଷରେ ବିଭିନ୍ନ ସାହିତ୍ୟର ସମୀକ୍ଷା ମଧ୍ୟ କରିଥିଲେ ।

ସାହିତ୍ୟକୁ ଏବଂ କାବ୍ୟକୁ ପ୍ରାୟ ଏକ ଉପନିଷଦୀୟ ସ୍ତରକୁ ଉନ୍ନୋଳିତ କରି-ନେଇ ଶ୍ରୀ ଅରବିନ୍ଦ କାବ୍ୟକାରଙ୍କୁ ଜଣେ ଋଷି ବୋଲି ଅଭିହିତ କରିଛନ୍ତି । ସାହିତ୍ୟକାର ଲାଗି ସାହିତ୍ୟ ଏକ ମନ୍ତ୍ର ହୋଇପାରିବ ବୋଲି କହିଛନ୍ତି । କାବ୍ୟକାରିତା ଏବଂ କଳାକୁ ସିଏ ଅମୂର୍ତ୍ତି ଏବଂ ମୂର୍ତ୍ତି ମଧ୍ୟରେ, ଜୀବନର ପରମାର୍ଥ ଏବଂ ଐହିକାର୍ଥ ମଧ୍ୟରେ ସ୍ୱଭାବପ୍ରେରିତ ଏକ ସେତୁ ବୋଲି କଳ୍ପନା କରିଛନ୍ତି । ଭବିଷ୍ୟତର ସାହିତ୍ୟ ପରମାର୍ଥ ଆତ୍ମସତ୍ୟ ଏବଂ ପୃଥିବୀସ୍ଥ ଜୀବନ ସତ୍ୟ ମଧ୍ୟରେ ଏହିପରି ଏକ ସଂଯୋଗ ସେତୁ ହୋଇ ରହିବ ବୋଲି ସିଏ ଇଙ୍ଗିତ ମଧ୍ୟ ଦେଇଛନ୍ତି । ଏହି ସନ୍ଦର୍ଭରେ ଶ୍ରୀ ଅରବିନ୍ଦ ଆଧୁନିକ ସାହିତ୍ୟର ପ୍ରସାରଭୂମି ଗୁଡ଼ିକ ଆଡ଼କୁ ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି । ଆଧୁନିକ ମନୁଷ୍ୟର ଜୀବନଭୂମି ତଥା ସାହିତ୍ୟ ମଧ୍ୟରେ ଯେ ଏକ ବୃହତ୍ତର ଜାଗରୂକତା, ମନୁଷ୍ୟ ଓ ତାର ପୃଥିବୀ ସମ୍ବନ୍ଧରେ ଆବରଣହୀନ ଓ ଛଳନାରହିତ ଏକ ବାସ୍ତବବାଦୀ ଦୃଷ୍ଟିକୋଣ, ଆପଣାର ବ୍ୟକ୍ତିସତ୍ତା ବା ବ୍ୟକ୍ତିଆତ୍ମା ବିଷୟରେ ଏକ ନିବିଡ଼ ସଚେତନତା ଲାଭ କରିବାର ଆକାଂକ୍ଷା ଏକ ଦର୍ଶନକ୍ଷମ ଏବଂ ସନ୍ଦିଗ୍ଧ ଭବିଷ୍ୟମୁଖିତା ଏବଂ ମନୁଷ୍ୟ ଭିତରେ ଈଶ୍ୱର-ମନ୍ତ୍ରର ଅବସ୍ଥିତିକୁ ଅନୁଭବ କରିବାଲାଗି ଏକ ପ୍ରତ୍ୟକ୍ଷୀଭୂତ ଓ ଭୟମୁକ୍ତ ଆଗ୍ରହର ଉଲ୍ଲେଖ କରିଛନ୍ତି । ଏକ ଯୌକ୍ତିକମ୍ୟମୂଳକ ଏବଂ ସମାଲୋକିତ ଜୀବନସମଗ୍ରତା ହିଁ ଭବିଷ୍ୟତ କାବ୍ୟର ବିଚରଣ ଭୂମି ହୋଇ ରହିବ ବୋଲି କହି ଶ୍ରୀ ଅରବିନ୍ଦ ଆମକୁ ପ୍ରାୟ ଏକ ଅହ୍ୱାନର ସମ୍ମୁଖୀନ କରାଇ ଦେବାକୁ ଇଚ୍ଛା କରିଛନ୍ତି ଏବଂ ଗ୍ରନ୍ଥଟିର ପ୍ରାୟ ଶେଷଭାଗରେ, ଆମକୁ ଉଦ୍‌ବୋଧିତ କରାଇଛନ୍ତି ଯେ, କାବ୍ୟରେ ଏକ ବୃହତ୍ତର ସ୍ତରର ଓ ଅନନ୍ୟ ସୃଜନର ଯୋଗ୍ୟ ହେବାକୁ ହେଲେ ଆମ ନିଜକୁ ହିଁ ବଦଳାଇବାକୁ ପଡ଼ିବ, ଅର୍ଥାତ୍ ଆମ ଚେତନାର ସ୍ଥିତିଟିକୁ ହିଁ ରୂପାନ୍ତରିତ କରିନେବାକୁ ପଡ଼ିବ । (ତତ୍ରୈବ,- ପୃଷ୍ଠା-୩୪୮) ଯାବତୀୟ ସର୍ଜନାତ୍ମକ ସମୀକ୍ଷା ଏହି ଉକ୍ତିଗୁଡ଼ିକୁ ଅବଶ୍ୟ ସ୍ମରଣ ରଖିବ ।

ଇଂରାଜୀ ସାହିତ୍ୟର ସୁପ୍ରସିଦ୍ଧ ଫରାସୀ ସମୀକ୍ଷକ ଶ୍ରୀଯୁକ୍ତ କାଜାମିଆଁ ଜଣେ ସାହିତ୍ୟ ସମୀକ୍ଷକ ଯଥାର୍ଥରେ ବହୁ ପ୍ରକାରେ ମନୀଷାର ଅଧିକାରୀ (a myriad-minded man) ହୋଇଥିବା ଉଚିତ ବୋଲି ମତ

ଦେଇଛନ୍ତି । ଜଣେ ଯଥାର୍ଥ ସମୀକ୍ଷକଙ୍କୁ ସିଏ ଜଣେ ଯଥାର୍ଥ ସ୍ରଷ୍ଟା ବୋଲି ମଧ୍ୟ କହିଛନ୍ତି । ପ୍ରକୃତ କଥା ହେଉଛି, ଜଣେ ସଫଳ ସାହିତ୍ୟକାର ଓ ଜଣେ ସଫଳ ସମୀକ୍ଷାକାରୀ ଭିତରେ କାବ୍ୟପୁରୁଷ ଏବଂ ସମୀକ୍ଷାପୁରୁଷ ଦୁହେଁଯାକ ଏକଜ ଗଅଁଠା ଗଅଁଠି ହୋଇ ରହିଥାନ୍ତି । ଦୁହେଁ ପରସ୍ପରକୁ ଆବୋରି କରି ରହିଥାନ୍ତି, ପରସ୍ପରର ଅନ୍ତର୍ଗତ ହୋଇ ରହିଥାନ୍ତି । ହୁଏତ ସେଇଥିଲାଗି ପ୍ରାୟ ଏକ ପୂର୍ବାହ୍ନପାତ କଲାପରି ଶ୍ରୀଯୁକ୍ତ ନଳିନୀକାନ୍ତ ଗୁପ୍ତ ମନ୍ତବ୍ୟ କରିଛନ୍ତି ଯେ, (୨) ଜଣେ ସ୍ରଷ୍ଟାର କିଛି ପରିମାଣରେ ଜଣେ ସମାଲୋଚକ ହେବା ଦରକାର ଏବଂ ଜଣେ ସମାଲୋଚକର ମଧ୍ୟ ସ୍ରଷ୍ଟା ହୋଇପାରିବା ଦରକାର । ସୃଜନ ଏବଂ ସମୀକ୍ଷା ମଧ୍ୟରେ ଚଳନ୍ତି ଦ୍ୱନ୍ଦ୍ୱଟିର ଏକ ସମାଧାନ କରି ଆମେ ସମ୍ଭବତଃ ଏଭଳି ମଧ୍ୟ କହିପାରିବା ଯେ, ଆପଣା ଚେତନାର ତଥା ସମୀକ୍ଷା-ବୋଧର ଉତ୍ତରୋତ୍ତର ଉନ୍ମେଷମାନଙ୍କରେ ଆମେ ହୁଏତ ଏପରି ଗୋଟିଏ ସୋପାନରେ ଯାଇ ପହଞ୍ଚି ପାରିବା, ଯେଉଁଠାରେ କି ସୃଜନ ଓ ସମୀକ୍ଷା ମଧ୍ୟରେ ଧର୍ମତଃ ଆଉ କୌଣସି ପାର୍ଥକ୍ୟ ରହେନାହିଁ; ସେତେବେଳେ ଚକ୍ଷୁ ଏହି ଦୁଇଟିଯାକ କାର୍ଯ୍ୟକୁ ଏକବେଳେକେ ସମ୍ପାଦିତ କରିପାରେ । ସାହିତ୍ୟ ସୃଷ୍ଟି କରୁଥିବା ବେଳେ ସିଏ ଆପଣାର ଉପଲବ୍ଧ ଉପାଦାନଗୁଡ଼ିକୁ ଜଣେ ସମୀକ୍ଷକ ଭଳି ଦେଖିବାକୁ ସମର୍ଥ ହୁଏ ଏବଂ ସାହିତ୍ୟର ସମୀକ୍ଷା କଲାବେଳେ ସେ ଆପଣା ଭିତରେ ରହିଥିବା ସୃଜନାକାଙ୍କ୍ଷା ବଳରେ କେତେ ସହିତ ସମୀକ୍ଷାର ବସ୍ତୁସାମଗ୍ରୀଗୁଡ଼ିକୁ ମଧ୍ୟ ସଂଯୁକ୍ତ କରି ରଖିବାକୁ ସମର୍ଥ ହୁଏ । ଏହି ସଂଯୁକ୍ତ ହେବାର ଯୋଗ୍ୟତାଟିକୁ ଅର୍ଜନ କରି ଆମେ ନିଜକୁ ସୃଜନ ଏବଂ ସମୀକ୍ଷା ଦୁଇ ଆଡ଼କୁ ପ୍ରସାରିତ କରି ଦେବାଲାଗି ସମର୍ଥ ହୋଇଥାଉ । ସେତେବେଳେ ଯାବତୀୟ ସୃଜନ ଜୀବନ-ସମୀକ୍ଷାର ନାନା ଅନାବିଷ୍କୃତ ନୂତନ ଦିଗ ଆଡ଼କୁ ଆମର ସମ୍ବେଦନା ଗୁଡ଼ାକୁ ଉଦ୍‌ଘାଟିତ କରିଦେଇଥାଏ ଏବଂ ଆମର ଯାବତୀୟ ସମୀକ୍ଷା ମଧ୍ୟ ସୃଜନାତ୍ମକ ହୁଏ । ସେତେବେଳେ ସାହିତ୍ୟରେ ମଧ୍ୟ ସୃଜନ ଭଲ ଲାଗେ, ସମୀକ୍ଷା ବି ଭଲ ଲାଗେ ।

ସାହିତ୍ୟ କୁଆଡ଼େ ଆମକୁ ଶାନ୍ତି ଆଣି ଦିଏ, ଜୀବନର ତପ୍ତ ନିଦାଘରେ ସନ୍ତପ୍ତ ହେଉଥିବା ମଣିଷକୁ ସୁଶୀତଳ ଛାୟା ପ୍ରଦାନ କରେ । ସ୍ୱୟଂ ଓଡ଼ିଶାର

ଫକୀରମୋହନ ମଧ୍ୟ କବିଙ୍କୁ ଅଶାନ୍ତ ଜଗତରେ ଶାନ୍ତିଦାତା ବୋଲି ସମ୍ବୋଧନ କରିଛନ୍ତି । ଗୋଟାଏ ପ୍ରକାରର ସାହିତ୍ୟ ହୁଏତ ଏବେ ମଧ୍ୟ ମୁଖ୍ୟତଃ ଶାନ୍ତି ଦେବାଲାଗି ହିଁ ଆପଣାକୁ ଉଦ୍ଦିଷ୍ଟ କରି ରଖିଛି ଓ ଶାନ୍ତିକାମୀ କ୍ଳାନ୍ତ ସାମନ୍ତମାନଙ୍କ ଦ୍ୱାରା ପୁରସ୍କୃତ ହେବାରେ ଲାଗିଛି । ଅନ୍ତର୍ଜୀବନର ମନ ଭିତରେ କୌଣସି ସ୍ଥାନରେ ଏକ ମୂଳଭୂତ ନାସ୍ତିକତା ପ୍ରକୁପିତ ହୋଇ ରହିଥିଲେ ମଣିଷ ତା' ଜୀବନରେ ସବାଆଗ ଶାନ୍ତି ପାଇବାକୁ ମନ କରେ, ସଂସାରକୁ ନଶ୍ୱର ମଣି ତାହା ଭିତରୁ ପଳାଇ ଯିବାକୁ ଚାହେଁ । ସିଏ ଦ୍ୱନ୍ଦ୍ୱ-ମୁକ୍ତ ହେବାକୁ ଇଚ୍ଛାକରି ଶୋଇପଡିବାକୁ ହିଁ ଶାନ୍ତିଲାଭର ପରମପଥ ବୋଲି ଅନୁଭବକରେ । ସିଏ ଧୀରହୋଇ ରହେ, ଖୁସି ହୋଇରହେ । ଏଠି, ଅର୍ଥାତ୍ ଆପଣା ଭିତରେ ତଥା ବାହାରେ ଏହି ବୃହତ୍ତର ସଂସାରରେ ତାକୁ କିଛି-ହେଲେ ଅସହ୍ୟ ମନେହୁଏ ନାହିଁ । କୌଣସି ପ୍ରକାର ଖାସ୍ତ୍ରତାରେ ବି ସିଏ କୌଣସି ବିଦ୍ରୋହ କରେ ନାହିଁ,—ତେଣୁ ଆଦୌ କୌଣସି ବାଟ ଚାଲେ ନାହିଁ । ଏହିପରି ସ୍ଥିର ହୋଇ ରହିବାଲାଗି ଅନେକ ମଣିଷ, ବିଶେଷତଃ ନାନା ବିଷମତା ଏବଂ ବଞ୍ଚନା ଦ୍ୱାରା ଆକ୍ରାନ୍ତ ହୋଇ ରହିଥିବା ଏକ ସମାଜର ଅନେକ ମଣିଷ ସାହିତ୍ୟକୁ ପ୍ରାୟ ଗୋଟାଏ ପ୍ରକାରର ନିଦ-ଔଷଧ ବା ଜ୍ୱାଳାନାଶକ ରୂପେ ବ୍ୟବହାର କରିଥାନ୍ତି । ସେମାନେ ସେଇଥିପାଇଁ ସାହିତ୍ୟ ଲେଖନ୍ତି, ସେଇଥିପାଇଁ ବି ସାହିତ୍ୟ ପଢ଼ନ୍ତି । ସେହି ସାହିତ୍ୟର ସାମାଜିକ ତଥା ଦାର୍ଶନିକ ଆକାଶଗୁଡ଼ାକ ଉପରେ ଉପେକ୍ଷା ଏବଂ ବୈରାଗ୍ୟମାନେ ରାଜା ହୋଇ ବସିଥାନ୍ତି । ଖୁସି କରି ରଖିଥାନ୍ତି । ସେତେବେଳେ ସମାଜରେ ଯେଉଁମାନେ ସାହିତ୍ୟ ଭୁକ୍ତି ପ୍ରସନ୍ନ ହୋଇ ରହିଥାନ୍ତି, ଫରାସୀ ସାହିତ୍ୟାଲୋଚନାରେ ସେମାନଙ୍କୁ 'bien pensants' ବା ଅନୁକୂଳତାପ୍ରେମୀ ବୋଲି କୁହାଯାଇଛି । ସେମାନେ ଆଦୌ କୌଣସି ପ୍ରଶ୍ନ ପଚାରନ୍ତି ନାହିଁ; ଯାହା ଯେପରି ଅଛି, ତାହାକୁ ସେହିପରି ଭାବରେ ମାନିନିଅନ୍ତି, ତାହାରି ଭିତରେ ସୁକୁଶଳ ଭାବରେ ଖାପ ଖାଇ ରହିଯାଆନ୍ତି ଓ ତାହାକୁ ହିଁ ଚତୁରତା ବୋଲି କହନ୍ତି । ସଫଳତା ବୋଲି କହନ୍ତି, ସେମାନେ ରୂଢ଼ିକୁ ମାନନ୍ତି, ସ୍ଥିତିକୁ ମାନନ୍ତି,—ପରିବର୍ତ୍ତନକୁ ଡରନ୍ତି ଓ ତେଣୁ ରକ୍ଷଣଶୀଳତାକୁ ହିଁ

ନିରପତ୍ତିର ଅମୋଘ ଭେଷଜ ବୋଲି ମାନିନେଇଥାନ୍ତି । ସେମାନେ ଭିତର ଆତ୍ମସନ୍ତୁଷ୍ଟ ହୋଇ ରହିଥାନ୍ତି, ରକ୍ଷଣଶୀଳତା ଓ ହୃଦୟହୀନତାର ଯନ୍ତ୍ରଗୁଡ଼ାକୁ ପରମ ନିଷ୍ଠାର ସହିତ ଚଳାଉ ଥାଆନ୍ତି । ବାଇବେଲ୍‌ରେ ଯେଉଁମାନଙ୍କୁ Pharisees ( ପାଷଣ୍ଡୀ ) ବୋଲି କୁହାଯାଇଛି, ଅତ୍ୟନ୍ତ ଦମ୍ଭ ସହକାରେ ସେହିପରି ଏକ ଜୀବନଯାପନ କରୁଥାନ୍ତି ।

ଯଥାର୍ଥ ସମୀକ୍ଷା ଆଦୌ ଶୀତଳ କରି ରଖି ପାରେନାହିଁ । ଶୀତଳ ହୋଇ ରହିଥିବା ହୃଦୟ ଗୁଡ଼ାକୁ ତାହା ଦଂଶନ ଦ୍ୱାରା ସଚେତନ କରିବାକୁ ଚେଷ୍ଟା କରେ । ଯେଉଁଠାରେ ଉପଭୋଗ ଏବଂ ରସାସ୍ୱାଦକୁ ହିଁ ସାହିତ୍ୟର ଉତ୍ତମ ଫଳ ବୋଲି ମାନି ନିଆ ଯାଇଥାଏ, ସେଠାରେ ସେହି କାରଣରୁ ହିଁ ସମୀକ୍ଷାର ଆଦୌ କୌଣସି ପ୍ରୟୋଜନ ରହିଛି ବୋଲି ମୋଟେ ଅନୁଭବ କରାଯାଏ ନାହିଁ । ପ୍ରାଚୀନ ସାହିତ୍ୟ ମୁଖ୍ୟତଃ ଏକ ସଂକୀର୍ଣ୍ଣ ଉପଭୋଗଧର୍ମୀ ବା ସ୍ତୁତିଧର୍ମୀ ସାହିତ୍ୟ ହୋଇ ରହିଥିଲା । ତେଣୁ ସେଥିରେ ସମୀକ୍ଷାର ଆଦୌ କୌଣସି ଆବଶ୍ୟକତା ନଥିଲା । ସୁଧୀ ଓ ସୁଜ୍ଞମାନଙ୍କର ସଭାରେ ହିଁ ମଣ୍ଡା ତିଆରି ହେଉଥିଲା, ମଣ୍ଡା ଭୁଞ୍ଜା ଯାଉଥିଲା । ସେହି ଦରବାରୀ ପ୍ରୀତ୍ୟବସର ଗୃହକରେ ଅଧିକାଂଶ ସ୍ଥଳରେ ରାଜାମାନେ ହିଁ 'ଏକଃ ଚନ୍ଦ୍ରଃ ତମୋହନ୍ତି' ହୋଇ ରହିଥିଲେ । ସାହିତ୍ୟ ଭିତରେ ଆଧୁନିକ ଆଖିର ଜିଜ୍ଞାସାଟି ପ୍ରବେଶ କଲା ପରେ ଯାଇ ସର୍ଜନାତ୍ମକ ସମୀକ୍ଷାର ଏକ ଅବସର ସୃଷ୍ଟି ହୋଇ ପାରିଲା । ସର୍ଜନାତ୍ମକ ସମୀକ୍ଷାର ସର୍ବଦା ଏକ Commitment ବା ଅଙ୍ଗୀକାର ରହିଥାଏ । ଯେଉଁ ସାହିତ୍ୟର କୌଣସି ଅଙ୍ଗୀକାର ନଥାଏ ଓ ଯେଠି ଯେତେବେଳେ ସାହିତ୍ୟିକମାନେ କର୍ତ୍ତୃତ୍ୱ ଏବଂ ଅନୁରକ୍ତାଗୁଡ଼ାକ ପାଖରେ ବଶ୍ୟସ୍ୟ ବେଶରେ ଆତ୍ମସମର୍ପଣ କରୁଥାନ୍ତି, ସେତେବେଳେ ସର୍ଜନାତ୍ମକ ସମୀକ୍ଷା ସେହି ଆତ୍ମସମର୍ପଣକୁ ତାହାର ସକଳ ଉତ୍ଫୁଲ୍ଲତାମୟ ଘୁଆଙ୍ଗ ସତ୍ତ୍ୱେ ତଥାପି ଆତ୍ମସମର୍ପଣ ଓ ଘୁଆଙ୍ଗ ବୋଲି ଘୋଷଣା କରେ । ଆତ୍ମତ୍ୟାଗିର କରୁଥିବା ସାହିତ୍ୟ-ଲେଖକକୁ ସିଏ ଜଣେ ସାହସୀ ମଣିଷ ହେବାର ଉଦ୍‌ବୋଧନ ଦିଏ, ଜୀବନର ଉଦ୍‌ବୋଧନ ଦିଏ, ପାପମୋଚନର ପ୍ରେରଣା ଦିଏ । ଯୁକ୍ତରାଜ୍ୟ ଆମେରିକାର ସଭାପତି କନ୍‌

କେନେଡ଼ି ଥରେ ଏକ ବକ୍ତୃତାରେ କହିଥିଲେ ଯେ, ଯେତେବେଳେ କ୍ଷମତା ଓ କର୍ତ୍ତୃତ୍ୱ ମଣିଷକୁ ଉଦ୍ଧତ କରି ପକାଏ, ସେତେବେଳେ କବି ଓ ସାହିତ୍ୟିକ ହିଁ ତାହାକୁ ତା'ର ସୀମାଗୁଡ଼ିକ ବିଷୟରେ ସଚେତନ କରାଇ ଦେବାକୁ ଆଗଭର ହୋଇ ବାହାରି ଆସେ । ଯେତେବେଳେ କର୍ତ୍ତୃତ୍ୱ ଓ କ୍ଷମତା ମଣିଷ ଜୀବନର ବିଚରଣକ୍ଷେତ୍ରଟିକୁ ଅଧିକରୁ ଅଧିକ ସଙ୍କୀର୍ଣ୍ଣ କରି ଆଣିବାଲାଗି ଦୌରାତ୍ମ୍ୟ କରି ବାହାରେ, ସେତେବେଳେ କାବ୍ୟ ଓ ସାହିତ୍ୟ ପରିଚ୍ଛନ୍ନତା ଓ ପ୍ରଶସ୍ତତାର ଉଦ୍‌ବୋଧନ ଦିଏ । ସର୍ଜନାତ୍ମକ ସାହିତ୍ୟସମୀକ୍ଷା ସାହିତ୍ୟକୁ ତାହାର ସେହି ଦାୟିତ୍ୱଟି ବିଷୟରେ ସଚେତନ କରାଇ ଦେଇଥାଏ । ଗୋଟାଏ ପାଖରେ ବନ୍ଧୁକ, ତାହା କ୍ଷମତାର ପ୍ରତୀକ; ଆଉ ଗୋଟାଏ ପାଖରେ କଲମ, ତାହା ହେଉଛି ସାହିତ୍ୟର ସଙ୍କେତ । ରୁଷିଆର କବି ମାୟାକୋଭ୍‌ସ୍କି ସାହିତ୍ୟର ସଙ୍କେତ କଲମ ବନ୍ଧୁକର ସମକକ୍ଷ ହୋଇ ଉଭା ହେଉ ବୋଲି ଇଚ୍ଛା କରୁଥିଲେ । ଆପଣାର ଗୋଟିଏ କବିତାରେ ରବୀନ୍ଦ୍ର-ନାଥ ମେସିନ୍‌ଗନ୍‌ ସମ୍ମୁଖରେ ମୁଇଁ ଫୁଲର ଗୀତ ଗାଇବାକୁ ହିଁ କବି ଓ ସାହିତ୍ୟିକର ଯଥାର୍ଥ ସ୍ପର୍ଦ୍ଧା ବୋଲି ଘୋଷଣା କରିଥିଲେ । ଯେଉଁ ଯୁଗରେ ମୁଇଁ ଫୁଲମାନେ ବନ୍ଧୁକମାନଙ୍କ ପାଖରେ ପୋଷ ମାନିଯିବାକୁ ହିଁ ଏକ ଇହଧର୍ମ ସଦ୍‌ଗୁଣ ସ୍ୱୀକାର କରି ନେଉଛନ୍ତି, ସେହି ଯୁଗରେ ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷାର ଆହୁରି ଅଧିକ ମହତ୍ତ୍ୱ ରହିଛି, ଆହୁରି ଅଧିକ ପ୍ରୟୋଜନ ରହିଛି । ଏହି ସମୀକ୍ଷା ବନ୍ଧୁକର ପକ୍ଷ ନେବ ନାହିଁ, ତାହା ମୁଇଁଫୁଲର ପକ୍ଷ ନେବ; —ଜୀବନର ପକ୍ଷ ନେବ, ସିଏ ଆଗାମୀ ସକାଳର ପକ୍ଷ ନେବ । ଆଗାମୀ ସକାଳଟିଏ ଯେ ପ୍ରକୃତରେ ଆସୁଛି, ସିଏ ସେହି ବିଶ୍ୱାସଟିର ପକ୍ଷ ନେବ । ସେହି ସକାଳଟିର ପ୍ରସ୍ତୁତି ଲାଗି ଯେଉଁ ନୂତନ-ସାହିତ୍ୟର ଆବଶ୍ୟ-କତା ରହିଛି, ସର୍ଜନାତ୍ମକ ସାହିତ୍ୟସମୀକ୍ଷା ତାହାରି ସକାଶେ ବାଟ କାଟି ନେବ ।

ସାହିତ୍ୟ ସମୀକ୍ଷାରେ ଅଙ୍ଗୀକାରର ଆଲୋଚନା କରିବା ସମୟରେ ସବୁ ଆଗ ଜାଁ ପଲ୍‌ ସାର୍ତ୍ର ମନେ ପଡ଼ିଯାଆନ୍ତି । ସାର୍ତ୍ର Commitmentକୁ Awareness ବୋଲି କହୁଥିଲେ । ସାହିତ୍ୟ ଓ ତାର ସମୀକ୍ଷା ଉଭୟ-ଙ୍କର ପଛରେ ରହିଥିବା ଏହି ସଚେତନତା ବା ସଜ୍ଞାନତାର ଦୂରଗତ ଅର୍ଥାତ୍‌

ଗୁଣାତ୍ମକ ମୂଲ୍ୟାୟନ ଦ୍ୱାରା ହିଁ ଆମେ ସେଗୁଡ଼ିକର ଯଥାର୍ଥ ମୂଲ୍ୟନିରୂପଣ କରି ପାରିବା । ଯଜ୍ଞାନୁଷ୍ଠାନରେ ବସିବା ପୂର୍ବରୁ ପ୍ରାଚୀନ ଋଷିମାନେ ଯେଉଁଭଳି 'କସ୍ମୈ ଦେବାୟ' ପ୍ରଶ୍ନଟିର ସମାଧାନ କରୁଥିଲେ । ସାହିତ୍ୟରେ ଅର୍ଥାତ୍ ସାହିତ୍ୟକାରର ଆପଣା ଜୀବନରେ ମଧ୍ୟ ସେହି ପ୍ରଶ୍ନଟି ପଚରାଯାଇ ପାରିବା ଉଚିତ ଓ ତାହାର ଏକ ସମାଧାନ ମିଳିପାରିବା ବି ଉଚିତ । ଆମେ ଆମର ସମୀକ୍ଷା ଓ ସାହିତ୍ୟ ଉଭୟ କ୍ଷେତ୍ରରେ ଯଦି ପ୍ରକୃତରେ ସର୍ଜନାତ୍ମକ ହେବାକୁ ଇଚ୍ଛା କରୁଥିବା, ଅର୍ଥାତ୍ ଯଦି ଆମେ ଜୀବନକୁ ଏକ ଆହ୍ୱାନ ଓ ଏକ ମାର୍ଗ ବୋଲି ଗ୍ରହଣ କରୁଥିବା, ଏକ ଯଥାର୍ଥତର ଭବିଷ୍ୟତର ନିର୍ମାଣ ଲାଗି ଯଦି ଆମେ ନିଜକୁ ଏକ ନିମିତ୍ତ ରୂପେ ଅନୁଭବ କରି ପାରୁଥିବା ଏବଂ ଏକ ନିମିତ୍ତ ହୋଇ ପାରିବାଲାଗି ଲୋଡ଼ା ହେଉଥିବା ସାହସ ଏବଂ ସମ୍ମତିର ବି ଭାଜନ ହୋଇ ପାରୁଥିବା, ତେବେ ଆମେ ଆପଣା ଭିତରର ବନ୍ଧୁଟି ପାଖରେ ସେହି ପ୍ରଶ୍ନଟିକୁ ଅବଶ୍ୟ ପଚାରିବା ଓ ତାହାର ଏକ ସମାଧାନ ପାଇବାକୁ ମଧ୍ୟ ଚେଷ୍ଟା କରିବା । ଏବଂ, ଏଥିରେ ଆଦୌ କୌଣସି ସନ୍ଦେହ ନାହିଁ ଯେ, ତାପରେ ଆମେ ଲେଖୁଥିବା ସାହିତ୍ୟ ମଧ୍ୟ ବଦଳିଯିବ, ଆମ ଯାବତୀୟ ସମୀକ୍ଷାର ପରିଧି ଓ ପରିପ୍ରେକ୍ଷୀ ଗୁଡ଼ିକ ବି ବଦଳିଯିବ । ଆମର ସାହିତ୍ୟ ଓ ସମୀକ୍ଷା ଆମର ଏକ ସାଧନାରେ ପରିଣତ ହେବ ଏବଂ ଆମକୁ ଆହୁରି ଅନେକ ଅତିକ୍ରମଣ ଲାଗି ଯୋଗ୍ୟ ଓ ପ୍ରସ୍ତୁତ କରାଇ ଆଣିବ ।

ଆମର ଏହି ବର୍ତ୍ତମାନର ପୃଥିବୀ ଯେଉଁଭଳି ଏକ ପରିସ୍ଥିତି ମଧ୍ୟଦେଇ ଗତି କରୁଛି, ସେଥିରେ ସାହିତ୍ୟିକ ଆପଣାକୁ ଅଙ୍ଗୀକୃତ କରାଇ ରଖିବାକୁ ସତକୁ ସତ ଏକ ନିଷ୍ପତ୍ତି ଗ୍ରହଣ କରିବା ମାତ୍ରକେ ସିଏ ବସ୍ତୁତଃ ଏକ ସଂଗ୍ରାମରେ ଅବତୀର୍ଣ୍ଣ ହେବାକୁ ଯାଉଥିବା ପରି ଅନୁଭବ କରିବ । ଏହି ସଂଗ୍ରାମ ହେଉଛି, ଯାହା ଯେଉଁଭଳି ଯେତିକି ରହିଛି, ସେହି ସ୍ଥିତାବସ୍ଥାକୁ ହିଁ ଏକମାତ୍ର ଯଥାର୍ଥ ଅବସ୍ଥା ବୋଲି ମାନି ନେଉଥିବା ଏକ ଆଳସ୍ୟବାଦୀ ଆଦର୍ଶ ବିରୁଦ୍ଧରେ ସଂଗ୍ରାମ । ବର୍ତ୍ତମାନର ସ୍ଥିତାବସ୍ଥା ହେଉଛି ମୁଖ୍ୟତଃ ଏକ ଦୁରବସ୍ଥା, ଏକ ହୀନାବସ୍ଥା । ଏଥିରେ ମଣିଷଲାଗି କୌଣସି ସ୍ଥାନ ନାହିଁ, ଜୀବନ ମୁକୁଳିତ ହୋଇ ଉଠିବାଲାଗି ଏଥିରେ ଯଥାର୍ଥ ଆଲୋକ ଏବଂ ଯଥାର୍ଥ ପବନଟିର ଅଭାବ ରହିଛି । ମଣିଷ ଭିତରେ ରହିଥିବା କବିକୁ, ଶିଶୁକୁ,

ପ୍ରେମିକକୁ, ବୀରକୁ ଏବଂ ଵାନ୍ତଦର୍ଶୀକୁ ତାହା ନାନାବିଧ ଅବମାନନା ତଥା ଅନ୍ୟ ଉତ୍ପୀଡ଼ନ ଭିତରେ ବନ୍ଦୀ କରି ରଖିଛୁ, ଅଣନିଃଶ୍ୱାସୀ କରି ରଖିଛୁ । ଜୀବନର ଏହି ସଂସାରରୂପୀ ବଣିଗ୍‌ବୃତ୍ତିରେ ଆଜି ମଣିଷଲାଗି କେହି ଗୋଟିଏ ହେଲେ ମାଲ ନାହାନ୍ତି । ସମସ୍ତେ ମଣିଷକୁ ପଣ୍ୟରୂପେ ବ୍ୟବହାର କରିବେ ବୋଲି ଧନୁଶର ଧରି ବାହାରିଛନ୍ତି । ଏହି ସଂସାରର ସର୍ବୋଚ୍ଚ କର୍ତ୍ତାମାନେ ସଂସାରର ଜ୍ଞାନ ଓ ବିଜ୍ଞାନକୁ ସବୁଠି ନାନା ସଂହାରଧର୍ମୀ ଅକାର୍ଯ୍ୟରେ ଲଗାଇବାରେ ଲାଗିଛନ୍ତି । '୧୯୮୪' ଉପନ୍ୟାସର ଲେଖକ ଜର୍ଜ ଅର୍‌ୱେଲ୍ ପୃଥିବୀ ଉପରେ ଯେଉଁ ଜୀବନଧ୍ୱଂସକ ଜଘନ୍ୟତା ପରାକ୍ରମ ବିସ୍ତାର କରି ସବାର ହୋଇ ରହିବ ବୋଲି ଆମ ଆଗରେ ସେହି ଶଙ୍କାମୟ ଚିତ୍ରଟିର ଅବତାରଣା କରିବାକୁ ଚେଷ୍ଟା କରିଥିଲେ, ସେହି ଚିତ୍ରଟି ଆଜି ପୃଥିବୀର ସଭ୍ୟସାକ ମହାଦେଶରେ ଗୋଟିଏ ଗୋଟିଏ ଫଳନ୍ତ ଗଛରେ ପରିଣତ ହେବାକୁ ବସିଲଣି । ସେହି ଚିତ୍ରଟିର ସାମନାରେ ଆଜି ସମସ୍ତେ ହଟି ଯାଉଥିବା ପରି ଲାଗୁଛନ୍ତି । ପୃଥିବୀସାକର ପଣ୍ଡିତମାନେ ସେହି କର୍ତ୍ତାମାନଙ୍କର ଘୋଡାଶାଳରେ ଯାଇ ପୋଷା ହୋଇ ରହିବାକୁ ମନ କଲେଣି । ଧର୍ମଗୁଡ଼ାକ ଭଷ୍ଟ ହେବାର ବାଟ ଧରିଲେଣି । ମାତ୍ର ସାହିତ୍ୟ ମନ କଲେ ଏହି ସ୍ଥିତିଟିର ନିଷ୍ପୃହ ମୁକାବିଲା କରିପାରିବ । ଏହି ସାହିତ୍ୟ ହିଁ ଆଜି ମଣିଷ ଭୋଗ କରୁଥିବା ଯନ୍ତ୍ରଣା ଗୁଡ଼ାକୁ ଜାଗରୂକ କରି ରଖି ପାରିବ । ନୂତନ ସମୀକ୍ଷା ଯେତେବେଳେ ବିଶ୍ୱସାହିତ୍ୟକୁ ସେହି ଯନ୍ତ୍ରଣାଟିକୁ ଜୀଆଇ ରଖିବାର ଉପଯୁକ୍ତ ପ୍ରେରଣା ଆଣି ଦେଇ ପାରିବ, ସେତେବେଳେ ଯାଇ ତାହା ନିଜକୁ ସର୍ଜନାତ୍ମକ ସାହିତ୍ୟସମୀକ୍ଷାର ସ୍ତରକୁ ଉନ୍ନୋଳିତ କରି ନେଇଯାଇ ପାରିବ ।

ପ୍ରବନ୍ଧଟି ଶେଷ କଲାବେଳକୁ ଜର୍ମାନ କବି ଓ ନାଟ୍ୟକାର ବେର୍ଟୋଲ୍ଟ୍ ବ୍ରେଖ୍ଟ୍‌ଙ୍କର ଗୋଟିଏ କବିତାଂଶ ମୋର ମନେ ପଡ଼ୁଛି । ସେଇ କବିତାଂଶଟିରେ ସିଏ ଜଣେ ସାହିତ୍ୟିକ ହିସାବରେ ଆପଣାର ଅସଲ ଆଶାଟିକୁ ଆମଲାଗି ପ୍ରକଟ କରିଦେଇଛନ୍ତି । ଆଧୁନିକ ପୃଥିବୀର ଯାବତୀୟ ସର୍ଜନାତ୍ମକ କ୍ଷେତ୍ରରେ ହୁଏତ ତାହା ହିଁ ଆମ ସମସ୍ତଙ୍କ ଲାଗି ଅନେକ ସାହସ ଯୋଗାଇଦେଇ ପାରିବ । ସେହି ଧାଡ଼ିଗୁଡ଼ିକ ହେଉଛି : There was

little I could do / but without me / The rulers would have been more secure / This was my hope. ଏହି ଧାଡ଼ି ଗୁଡ଼ିକ କେବଳ ଜଣେ ଶୁଦ୍ଧ କବି କିମ୍ବା ସାହିତ୍ୟିକର ନୁହେଁ, ଏଗୁଡ଼ିକ ହେଉଛି ଜଣେ ଅଙ୍ଗୀକାରବଦ୍ଧ ଆଧୁନିକ ମଣିଷର । ଜଣେ ଜାଗ୍ରତ ଜୀବନସମୀକ୍ଷକର ଓ ସୃଜନାତ୍ମକତାକୁ ହିଁ ବ୍ରତ କରି ବାନ୍ଧିରଖିବା ଜଣେ ସୈନିକର । ଆଗେ ରାଜାମାନେ କୁଆଡ଼େ ସାହିତ୍ୟିକ ମାନଙ୍କର ପୋଷଣ କରୁଥିଲେ । ରାଜାଙ୍କ ପୃଷ୍ଠପୋଷକତା ବିନା ସେତେବେଳେ ଜଣେ ସାହିତ୍ୟିକ ଆପଣାକୁ ଭାରି ଅରକ୍ଷିତ ବୋଲି ଅନୁଭବ କରୁଥିଲା । ଆମର ଏ ଯୁଗରେ ସାହିତ୍ୟ ଦରବାରକୁ ଛାଡ଼ି ଜୀବନର ଧର୍ମକ୍ଷେତ୍ରରେ ଆସି ପ୍ରବେଶ କରିଛି । ସର୍ଜନାତ୍ମକ ସାହିତ୍ୟସମୀକ୍ଷା ତାକୁ ଆଜି ତାହାରି ଭିତରକୁ ବରଣ କରିନେଇ ଆସିବ । ସର୍ଜନାତ୍ମକ ସାହିତ୍ୟସମୀକ୍ଷା ମଧ୍ୟକୁ ପ୍ରବେଶ କରିବାଲାଗି ଆପଣାର ସମ୍ମତି ଦେଇ ଆମର ସ୍ଥାନୀୟ ସାହିତ୍ୟଗୁଡ଼ିକ ମଧ୍ୟ ଆପଣାର ସମଗ୍ର ବ୍ରହ୍ମାଣ୍ଡଟିକୁ ଆବିଷ୍କାର କରିବାପାଇଁ ସମର୍ଥ ହୋଇ ପାରିବେ । ପ୍ରାଚୀନ ଯୁଗର ମଣିଷ ଭୟ ଓ ଭାଗ୍ୟ ପାଖରେ ଆପଣାକୁ ଅଙ୍ଗୀକୃତ କରି ରଖିଥିଲା । ତା'ପରେ ରାଜାମାନେ ପୃଥିବୀରେ ଭାଗ୍ୟଧର ରୂପେ ଅବତୀର୍ଣ୍ଣ ହେଲେ ଓ ମଣିଷର ସବୁଯାକ ଅଙ୍ଗୀକାର ଏବଂ ଅନୁରକ୍ତିକୁ ଆତ୍ମସାତ୍ କରିନେଲେ । ବର୍ତ୍ତମାନ ଆମ ଏ ଯୁଗରେ ଏକ ଆଧୁନିକ ସାମନ୍ତ-ବାଦ ମଣିଷକୁ ମୃଗୟାର ଏକ ସାମଗ୍ରୀରୂପେ ବ୍ୟବହାର କରୁଛି । ଏହି ପରିସ୍ଥିତିରେ ମଣିଷ ଉପରେ ଜାତି, ଦେଶ, ମାତୃଭୂମି ଓ ପିତୃଭୂମି ପ୍ରଭୃତି କେତେ ଶବ୍ଦାୟୁଧର ପ୍ରୟୋଗ କରାଯାଉଛି ଓ ମଣିଷକୁ ଭାରି କ୍ଷୁଦ୍ର କରି ରଖା-ଯାଉଛି । ତାହାରି ବିରୁଦ୍ଧରେ ସମଗ୍ର ପୃଥିବୀରେ କ୍ରମେ ଏକ ମୋହଭଙ୍ଗର ପରିସ୍ଥିତି ଜନ୍ମଲାଭ କଲାଣି । ଆମ ଆଧୁନିକ ବିଶ୍ୱସାହିତ୍ୟର ମଧ୍ୟ ଏଥିରେ ଏକ ଶକ୍ତିଶାଳୀ ଭାଗ ରହିଛି । ସର୍ଜନାତ୍ମକ ସାହିତ୍ୟସମୀକ୍ଷା ବିଶ୍ୱସାହିତ୍ୟକୁ ତାହାର ସେହି ଭୂମିକାଟି ଲାଗି ଯୋଗ୍ୟରୁ ଯୋଗ୍ୟତର ହେବାରେ ସାହାଯ୍ୟ କରୁଛି ।

ସାହିତ୍ୟ ଏବଂ ସମୀକ୍ଷା ଉଭୟଙ୍କୁ ବର୍ତ୍ତମାନର ଏହି ଅନ୍ଧାର ଭିତରେ ହିଁ କାର୍ଯ୍ୟ କରିବାକୁ ପଡ଼ିବ । ଅନ୍ଧାର ଭିତରୁ ପଳାଇଯାଇ କେଉଁଠାରେ ଏକ

ରାଜକୁମାରୀ ଅପେକ୍ଷା କରି ରହିଥିବା ଅପୂର୍ବ ମହଲ ଭିତରେ ଆଶ୍ରୟ ନେଲେ ସାହିତ୍ୟ ଉପସ୍ଥିତ ଅନ୍ଧାରର ମୋଟେ କିଛି ହେଲେ କରିପାରିବ ନାହିଁ । ଏହି ଅନ୍ଧାରଗୁଡ଼ାକୁ ଅସ୍ୱୀକାର କରି ହିଁ ଏହି ଅନ୍ଧାରଭିତରେ ବିଚରଣ କରିବାକୁ ହେବ । ଆପଣା ଭିତରେ ଆଗାମୀ ସକାଳର ସୂର୍ଯ୍ୟଟିକୁ ଧାରଣ କରି ପାରିଥିଲେ ଯାଇ ସେକଥା ସମ୍ଭବ ହୋଇ ପାରିବ । ଚାଲର ଦୁର୍ଗ... କବି ପାବ୍‌ଲୋ ନେରୁଦାଙ୍କ ଉଦ୍ଦେଶ୍ୟରେ ଲିଖିତ ଆପଣାର ଏକ ଏଲେଜିରେ ଫରାସୀ କବି ଲୁଇ ଆରାଗଁ ଠିକ୍ ସେହିକଥା କହିଛନ୍ତି । ସିଏ କହିଛନ୍ତି : ( ) "ଆମେ ହେଉଛୁ ରାତିର ସେହି ଜୀବନଧାରୀ ପକ୍ଷୀମାନେ, ଯେଉଁମାନେ କି ନିଜ ଭିତରେ ସୂର୍ଯ୍ୟକୁ ବହନ କରି ବାଟ ଚାଲିବାରେ ଲାଗିଛନ୍ତି ।" ସର୍ଜନାତ୍ମକ ସାହିତ୍ୟ ତଥା ସମୀକ୍ଷା ଉଭୟ ମଧ୍ୟରେ ଠିକ୍ ଏହି ବିଶ୍ୱାସଟି ଏକ commitment ରୂପେ ଜୀବନ୍ତ ହୋଇ ରହିପାରିବା ଉଚିତ । ତଥାକଥିତ ଅନେକ ଆଧୁନିକ ସାହିତ୍ୟ ଓ ସମୀକ୍ଷା ଆଜି ସେହି ବିଶ୍ୱାସଟିକୁ ମଣିଷ ଭିତରୁ ମାରିଦେବାକୁ ହିଁ ଗଢ଼ିଥିବା ଏକ ଷଡ଼ଯନ୍ତ୍ର କରି ବାହାରିଛନ୍ତି । ଅସୁନ୍ଦରତା ଓ ଅମାନବିକତାର ପ୍ରତୀକ ହୋଇ ବସିଥିବା ସାମନ୍ତମାନେ ସେମାନଙ୍କୁ ସେହି ବାଟରେ ଯାବତୀୟ ପ୍ରକାରର ପ୍ରଲୋଭନ ଏବଂ ପ୍ରରୋଚନା ଯୋଗାଇ ଦେବାରେ ଲାଗିଛନ୍ତି । ସେମାନେ ସାହିତ୍ୟକୁ ଖୁଣ୍ଟରେ ବାନ୍ଧି ରଖିବେ ବୋଲି ଫିକର କରିଛନ୍ତି । ଏକ ସର୍ଜନାତ୍ମକ ସମୀକ୍ଷା ସାହିତ୍ୟକୁ ଓ ତାର ବାହକ ସାହିତ୍ୟିକଙ୍କୁ ଏହି ଦୁର୍ଗତି ଭିତରୁ ରକ୍ଷା କରିବ । ବାଟ ଭୁଲି ଯାଉଥିବା ଓ ଯାଇଥିବା ସାହିତ୍ୟ ଏବଂ ସାହିତ୍ୟିକଙ୍କୁ ସିଏ ପୁଣି ଘରକୁ ଫେରାଇ ଆଣିବ । ତାହା ଯାବତୀୟ ପ୍ରକାରର ଅଫିମକୁ ଅସ୍ୱୀକାର କରିବ । ଅଫିମଗୁଡ଼ାକୁ ଅସ୍ୱୀକାର କରିବାର ସାହସ ବାନ୍ଧିପାରିଲେ ଓ ଅସଲ ମେରୁଦଣ୍ଡ ଗୁଡ଼ିକୁ ଅର୍ଜନ କରି ପାରିଲେ ଯାଇ ଯେ ଆମେ ଆମର ଅସଲ ଅନୁରାଗ ଗୁଡ଼ିକୁ ଚିହ୍ନି ପାରିବା ଓ ଅସଲ ଧର୍ମଯୁଦ୍ଧର ଯୋଦ୍ଧା ହୋଇ ପାରିବା, ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା କିନ୍ତୁ ପରି ଆମକୁ ସେହି ପରିଚିତିର ସାମନାସାମନି ଆଣି ଠିଆ କରାଇଦେଇ ପାରିବ । ତେବେ ଯାଇ ହେବ ।

**ଶ୍ରୀ ଚିତ୍ତରଂଜନ ଦାସ**

# ସୂଚନା : ପୁସ୍ତକ ଟିପ୍ପଣୀ


୧ । Peter P. Rohde : Soeren Kierkegards Dagbo-eger, Gyldendal, Copenhagen, 1953, ପୃଷ୍ଠା—୪୭

୨ । Eugene Goodheart : The Failure of Criticism, Harvard University Press, 1978

୩ । Rene Wellek : Discriminations, Vikas Publications, New Delhi, 1970

୪ । Rene Wellek in wellek and Warren : Theory of Literature, Penguin, London, 1966, ପୃଷ୍ଠା—୫୩,

୫ । Sri Aurobindo : The Future Poetry, Sri Aurobindo Birth centenary Library, Vol. IX, Pondicherry, 1971.

୬ । ଶ୍ରୀଯୁକ୍ତ ନଳିନୀକାନ୍ତ ଗୁପ୍ତ : ରଚନାବଳୀ, ପ୍ରଥମ ଖଣ୍ଡ (ସାହିତ୍ୟିକା), ଶ୍ରୀଗୁରୁ, କଲିକତା—୧୨, ୧୯୭୫, ପୃଷ୍ଠା—୨୦୨

୭ । "Nous sommes les gens de la nuit qui portons le soleil en nous."




(୧) ପାଶ୍ଚାତ୍ୟ ପରିଭାଷାରେ ସର୍ଜନାତ୍ମକ ସମୀକ୍ଷା ଅଥବା Creative Criticismର ଦୁଇଟି ଅର୍ଥ ଗ୍ରହଣ କରାଯାଇପାରେ । ଗୋଟିଏ ହେଲା ଯେଉଁ ସମୀକ୍ଷା ସର୍ଜନା ବା ସୃଷ୍ଟି ସମ୍ପର୍କୀୟ ଓ ଅନ୍ୟଟି, ଯେଉଁ ସମୀକ୍ଷା ସୃଜନଧର୍ମୀ ବା ସ୍ୱୟଂ ଗୋଟିଏ ସୃଷ୍ଟି । ଏ ଦୁଇ ପ୍ରକାର ସମୀକ୍ଷା ସମ୍ବନ୍ଧରେ କିଛି ଜାଣିବା ପୂର୍ବରୁ 'ସମୀକ୍ଷା' ଶବ୍ଦର ଅର୍ଥ ସମ୍ପର୍କରେ କିଛି ଜାଣିବା ଉଚିତ । 'ସମୀକ୍ଷା' ଶବ୍ଦର ଆକ୍ଷରିକ ଅର୍ଥ ହେଲା ସମ୍ୟକ୍ ଈକ୍ଷା ବା ଭଲକରି ଦେଖିବା । ଏଠାରେ 'ଈକ୍ଷା' ଦର୍ଶନେନ୍ଦ୍ରିୟର କ୍ରିୟା ହେଲେ ମଧ୍ୟ ବ୍ୟାପକ ଅର୍ଥରେ ସମସ୍ତ ଜ୍ଞାନେନ୍ଦ୍ରିୟର କ୍ରିୟାକୁ ବୁଝାଏ । ଏହି ଅର୍ଥରେ ଇଂରାଜୀର 'Perception' ଶବ୍ଦ ବ୍ୟବହାର ହୋଇଥାଏ । ଅତଏବ ଭଲକରି ଦେଖିବାର ଅର୍ଥ ଭଲକରି ଶୁଣିବା, ଚାଖିବା, ଶୁଂଘିବା ଓ ଭଲକରି ସ୍ପର୍ଶ କରିବା ମଧ୍ୟ ହୋଇପାରେ, ଭଲକରି ଏହିସବୁ କାର୍ଯ୍ୟ କରିବାକୁ ହେଲେ ସେଗୁଡ଼ିକୁ ନାନା ଦିଗରୁ ବିଶ୍ଳେଷଣ, ସଂଶ୍ଳେଷଣକରି ତାର ମୂଲ୍ୟାୟନ ମଧ୍ୟ କରିବାକୁ ପଡ଼େ । ଏହି କ୍ରିୟାର ଅନ୍ୟ ନାମ ହେଲା ବିଚାର । ଇଂରାଜୀ ଶବ୍ଦ Criticism ଗ୍ରୀକ୍ ଧାତୁ 'Krinein' ଓ ପ୍ରାତିପଦିକ 'Kritikos'ରୁ ଆସିଛି । ତାହାର ମୂଳ ଅର୍ଥ ମଧ୍ୟ ବିଚାର (କରିବା) । ଇଂରାଜୀରେ ଏହି Criticismର ଏକ ସାଧାରଣ ଅର୍ଥ ହେଉଛି ଦୋଷ ବାଛିବା । କିନ୍ତୁ ମୁଖ୍ୟତଃ ଏହାର ପ୍ରୟୋଗ ହୋଇଥାଏ—କୌଣସି କାର୍ଯ୍ୟ, ଲୋକ-ବ୍ୟବହାର ମତାମତ, ସିଦ୍ଧାନ୍ତ ଏବଂ ଶିଳ୍ପ-ସୃଷ୍ଟି ପ୍ରଭୃତିର ଦୋଷ-ଗୁଣ ବିଚାର କରି ତାହାର ମୂଲ୍ୟାୟନ କରିବାପାଇଁ । ଏଣୁ ସୃଷ୍ଟି (Creation) ଓ ସମୀକ୍ଷା (Criticism) ମଧ୍ୟରେ ଧର୍ମଗତ ଓ ଉଦ୍ଦେଶ୍ୟଗତ ପାର୍ଥକ୍ୟ ସ୍ପଷ୍ଟ । କିନ୍ତୁ ଉଭୟ ପରିପନ୍ଥୀ ନୁହନ୍ତି, ବରଂ ପରସ୍ପରର ପରିପୂରକ । ଏକଥା ସତ୍ୟ ଯେ ସୃଷ୍ଟି ସମୀକ୍ଷାର ଅଗ୍ରଜ ଏବଂ ସେଥିପାଇଁ ସାଧାରଣ ଲୋକେ ସୃଷ୍ଟିକୁ ସମୀକ୍ଷାଠାରୁ ଉଚ୍ଚ ଆସନ ଦେଇଥାନ୍ତି । ବସ୍ତୁତଃ, ଏ ପ୍ରକାର ବର୍ଗୀକରଣ ଅସମୀଚୀନ । ଏକ ପକ୍ଷରେ ସମୀକ୍ଷା ଯେପରି ସୃଷ୍ଟିର ଅପେକ୍ଷା ରଖେ,

ଅପର ପକ୍ଷରେ ସୃଷ୍ଟି ମଧ୍ୟ ସମୀକ୍ଷା ନା ଭୋଗପାଇଁ । ଦର୍ଶନ କ୍ଷେତ୍ରରେ ସୃଷ୍ଟି (Creation) ସମ୍ପର୍କରେ ଦୁଇଟି ମତବାଦ ଦେଖାଯାଏ—ଯାନ୍ତ୍ରିକବାଦ (Mechanical theory) ଓ ଉଦ୍ଦେଶ୍ୟବାଦ (Teleological-theory ) । ପ୍ରାଚୀନ ଭାରତରେ ଚାର୍ବାକବାଦୀମାନେ ଓ ପାଶ୍ଚାତ୍ୟଜଗତର ଭୌତିକବାଦୀ ଏବଂ ବସ୍ତୁବାଦୀମାନେ ( Materialists and Realists) ଯାନ୍ତ୍ରିକବାଦର ସମର୍ଥନ କରନ୍ତି । ସେମାନେ କହନ୍ତି ସୃଷ୍ଟିର କୌଣସି ଉଦ୍ଦେଶ୍ୟ ନାହିଁ । ଏସବୁ ସୃଷ୍ଟି ଆକସ୍ମିକ ଓ ତାର ଧ୍ୱଂସ ମଧ୍ୟ ଆକସ୍ମିକ । ଏ ସୃଷ୍ଟିରେ କେହି କାହାରପାଇଁ ନୁହନ୍ତି । ଲୌକିକ ଜଗତରେ ବ୍ୟବହାରପାଇଁ କେବଳ ବିଭିନ୍ନ ବସ୍ତୁର ପାରସ୍ପରିକ ସମ୍ପର୍କ ପ୍ରତିଷ୍ଠିତ ହୋଇଥାଏ । ସେ ସବୁ ସମ୍ପର୍କ ଚିରସ୍ଥାୟୀ ବା ସାର୍ବଜନୀନ ନୁହେଁ । ଦେଶ, କାଳ, ପାତ୍ର, ସଂସ୍କୃତି ଓ ପରଂପରାନୁଯାୟୀ ସେଗୁଡ଼ିକ ପରିବର୍ତ୍ତିତ ହୋଇଥାନ୍ତି । ଅପର ପକ୍ଷରେ ପ୍ରାଚୀନ ଭାରତରେ ଛଅଟିଯାକ ବୈଦିକ ସଂପ୍ରଦାୟ, ଯଥା—ନ୍ୟାୟ, ବୈଶେଷିକ, ସାଂଖ୍ୟ, ଯୋଗ, ଏବଂ ମୀମାଂସା-ବେଦାନ୍ତ ଏବଂ ପାଶ୍ଚାତ୍ୟ ଜଗତରେ ଆଦର୍ଶବାଦୀମାନେ ସୃଷ୍ଟିକୁ ଉଦ୍ଦେଶ୍ୟମୂଳକ ଭାବେ ଗ୍ରହଣ କରନ୍ତି । ସେମାନେ କହନ୍ତି ପ୍ରତ୍ୟେକ ବସ୍ତୁର ସୃଷ୍ଟି ମୂଳରେ ସ୍ରଷ୍ଟାର ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରହିଛି । ସାଂଖ୍ୟଦର୍ଶନରେ ରୂପକ ଛଳରେ କୁହାଯାଇଛି କୁଳବଧୂ ଓ ବାରବଧୂର ସୌନ୍ଦର୍ଯ୍ୟ ଓ ଶୃଙ୍ଗାର ଯଥାକ୍ରମେ ଧର୍ମପତି ଏବଂ ବୈଶିକ ବା ଜାର ପୁରୁଷର ଭୋଗପାଇଁ । ନର୍ତ୍ତକୀର ନୃତ୍ୟ ରଙ୍ଗାଳୟର ଦର୍ଶକମାନଙ୍କ ପରିତୃପ୍ତିପାଇଁ । ଏବଂ ସର୍ବୋପରି ଏ ସମଗ୍ର ପ୍ରାକୃତିକ ସୃଷ୍ଟି ବସ୍ତୁତଃ ପୁରୁଷର ଭୋଗପାଇଁ । ଅଦ୍ୱୈତ-ବେଦାନ୍ତୀ ତଥା ପଶ୍ଚିମ ପୃଥିବୀର ବୈୟକ୍ତିକ ଆଦର୍ଶବାଦୀ (Subjective Idealists) ଏବଂ ସଂପୂର୍ଣ୍ଣ ଆଦର୍ଶବାଦୀ (Absolute Idealists) ଦାର୍ଶନିକମାନେ ଦୃଶ୍ୟକୁ ଦ୍ରଷ୍ଟାର ଏବଂ ସୃଷ୍ଟିକୁ ସ୍ରଷ୍ଟାର ଅନୁଭୂତି ବା ବିଭାଗ (experience) ସହିତ ଏକାକାର କରିଦେଲେ । ସାଂଖ୍ୟର ତ୍ରୈକୋଣିକ ସମ୍ପର୍କ, ଯଥା : ସ୍ରଷ୍ଟା-ସୃଷ୍ଟି-ଭୋକ୍ତା ଏହି ଚରମପନ୍ଥୀ ଅଦ୍ୱୈତ୍ୟବାଦୀଙ୍କ କ୍ଷେତ୍ରରେ ଏକ ପାକ୍ଷିକ ସମ୍ପର୍କରେ ପରିଣତ ହେଲା । ସାଂଖ୍ୟବାଦୀମାନଙ୍କ ପରି ସେମାନେ 'ସୃଷ୍ଟିର ଉଦ୍ଦେଶ୍ୟ ଭୋଗପାଇଁ,—ଏକଥା

ସ୍ୱୀକାର କଲେ ମଧ୍ୟ ଭୋକ୍ତାକୁ ସ୍ରଷ୍ଟାଠାରୁ ଭିନ୍ନ ନ କରି ଦୁହିଁଙ୍କର ତାଦାତ୍ମ୍ୟ ସମ୍ପର୍କ ସ୍ଥାପନ କଲେ । ଅର୍ଥାତ୍ ସ୍ରଷ୍ଟା ସୃଷ୍ଟି କରେ ଅନ୍ୟ କୌଣସି ତୃତୀୟ ପକ୍ଷର ଭୋଗପାଇଁ ନୁହେଁ, ନିଜର ଭୋଗପାଇଁ । ଏହି ମତରେ ଚରମ ପର୍ଯ୍ୟାୟ ହେଲା ସ୍ରଷ୍ଟାର ଭୋଗଠାରୁ ସୃଷ୍ଟିର କୌଣସି ସ୍ୱତନ୍ତ୍ର ସ୍ଥିତି ନାହିଁ । ସୃଷ୍ଟିର ଅର୍ଥ ସ୍ରଷ୍ଟାର ଅନୁଭୂତି ବା ଭୋଗମାତ୍ର ।

ଏହି ଚରମପନ୍ଥୀ ଅଦ୍ୱୈତ ସିଦ୍ଧାନ୍ତ ଊନବିଂଶ ଶତକର ଶେଷ ଭାଗରେ ଏବଂ ବିଂଶ ଶତକର ପ୍ରଥମ ଦୁଇ ଦଶନ୍ଧିରେ ଦେଖା ଦେଇଥିବା ସୌନ୍ଦର୍ଯ୍ୟବାଦ ଏବଂ ଅଭିବ୍ୟକ୍ତିବାଦର ମୂଳଭିତ୍ତି । ଏହି ଦୁଇବାଦ ସୃଷ୍ଟିର ଉଦ୍ଦେଶ୍ୟମୂଳକ ସିଦ୍ଧାନ୍ତ ଗ୍ରହଣ କଲେ ହେଁ ଅଦ୍ୱୈତବାଦୀ ପରି ଏହି ଉଦ୍ଦେଶ୍ୟ ବା ଭୋଗକୁ କୌଣସି ତୃତୀୟ ପକ୍ଷରେ ନିହିତ ନକରି ଶିଳ୍ପ-ସୌନ୍ଦର୍ଯ୍ୟକୁ ସଂପୂର୍ଣ୍ଣଭାବେ ସ୍ରଷ୍ଟା ବା ଶିଳ୍ପୀର ଭୋଗପାଇଁ ଉଦ୍ଦିଷ୍ଟ ବୋଲି ଘୋଷଣା କଲେ । ଅର୍ଥାତ୍ ଶିଳ୍ପୀ ଶିଳ୍ପ ସୃଷ୍ଟି କରେ, ନିଜର ଭୋଗପାଇଁ, ଆନନ୍ଦପାଇଁ ଏବଂ ସନ୍ତୋଷପାଇଁ । କୌଣସି ତୃତୀୟ ପକ୍ଷ ଅଥବା ସୁଧୀ ସମାଜକର ଅନୁଭୂତି ଏବଂ ସମୀକ୍ଷାଜନିତ ମତାମତ ଏ କ୍ଷେତ୍ରରେ ହେୟ ହୋଇପଡ଼ିଲା । ଶିଳ୍ପୀର ଏହି ସର୍ବତନ୍ତ୍ର-ସ୍ୱାତନ୍ତ୍ର୍ୟ ବିଷୟ ପାଶ୍ଚାତ୍ୟ ଜଗତରେ ପ୍ରଥମେ ରୋମାଣ୍ଟିକ କବିମାନେ ଦାବୀ କରିଥିଲେ ହେଁ ତାର ଚରମ ବିକାଶ ଘଟିଥିଲା ସୌନ୍ଦର୍ଯ୍ୟବାଦୀଙ୍କ ମଧ୍ୟ ଦେଇ ବିଂଶ ଶତକର ଇଟାଲୀୟ ଦାର୍ଶନିକ କ୍ରୋଚେଙ୍କ ସିଦ୍ଧାନ୍ତରେ । ଭାରତରେ କିନ୍ତୁ ଏ ମତ ବହୁ ପ୍ରାଚୀନ । ଅଗ୍ନି ପୁରାଣରେ କବିଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନ ସ୍ରଷ୍ଟା ରୂପେ ଗ୍ରହଣ କରାଯାଇଛି । କିନ୍ତୁ ଏ ଦେଶର ଦାର୍ଶନିକ ସିଦ୍ଧାନ୍ତରେ ଅଦ୍ୱୈତବାଦର ଚରମ ପ୍ରତିଷ୍ଠା ହୋଇ-ଥିଲେ ହେଁ ଶିଳ୍ପତତ୍ତ୍ୱରେ ପାଶ୍ଚାତ୍ୟ ସୌନ୍ଦର୍ଯ୍ୟବାଦ ବା ଅଭିବ୍ୟକ୍ତିବାଦର ସମର୍ଥନ ମିଳେନା । ଆଦିକବି ବାଲ୍ମୀକିଙ୍କ ଆଦ୍ୟଶ୍ଳୋକ ରଚନାଠାରୁ ସପ୍ତଦଶ ଶତାବ୍ଦୀର ପ୍ରଭାବଶାଳୀ ସୈଦ୍ଧାନ୍ତିକ ପଣ୍ଡିତରାଜ ଜଗନ୍ନାଥଙ୍କ ପର୍ଯ୍ୟନ୍ତ ସମସ୍ତ କବି ଏବଂ ଦାର୍ଶନିକ ଶିଳ୍ପ ସୃଷ୍ଟିକୁ ଶିଳ୍ପୀର ଭୋଗପାଇଁ ଗ୍ରହଣ କରିନାହାନ୍ତି । ଶିଳ୍ପ ସୃଷ୍ଟିର ମୁଖ୍ୟ ଉଦ୍ଦେଶ୍ୟ ଅନ୍ୟ ଏକ ପକ୍ଷର ଭୋଗ ।

ଏହି ପକ୍ଷକୁ ଭୋକ୍ତା, ଭାବୁକ, ସହୃଦୟ, ସାମାଜିକ, ପ୍ରମାଣ ଆଦି ଶବ୍ଦଦ୍ୱାରା ଅଭିହିତ କରାହୋଇଛି । କବି କାଳିଦାସ ସ୍ପଷ୍ଟ ଘୋଷଣା କରି କହିଛନ୍ତି ଯେ, ବିଦ୍ୱାନ୍ ବ୍ୟକ୍ତିମାନଙ୍କର ସନ୍ତୋଷ ଜାତ ନ ହେବା ପର୍ଯ୍ୟନ୍ତ ଶିଳ୍ପ ସୃଷ୍ଟିର ସାଧୁତା ପ୍ରମାଣିତ ହୁଏନା । ଅତଏବ ଶିଳ୍ପୀର ମନ ମୁତାବକ, କେବଳ ମୋର ନିଜର ସନ୍ତୋଷପାଇଁ ସେ ଶିଳ୍ପ ସୃଷ୍ଟି କରିବ ନାହିଁ । ଶିଳ୍ପ ସୃଷ୍ଟିର ସାଧୁତା ପ୍ରମାଣିତ ହେବା ଉଚିତ ଏବଂ ସେହି ସାଧୁତାର ମାପକାଠି ହେଲା ବିଦ୍ୱାନ୍ ବ୍ୟକ୍ତିର ସନ୍ତୋଷ । ଏହି ପ୍ରମାଣ କ୍ରିୟାର ଅନ୍ୟ ନାମ ହେଲା ପରୀକ୍ଷା ଏବଂ ପରୀକ୍ଷକ ଜଣେ ବିଦ୍ୱାନ୍, ସହୃଦୟ ତଥା ଭାବୁକ ବ୍ୟକ୍ତି ହେବା ଉଚିତ । ନଚେତ୍ ତାଙ୍କର ବିଚାର ଶକ୍ତି ପର୍ଯ୍ୟାପ୍ତ ହୋଇପାରିବ ନାହିଁ । ଅନେକ କ୍ଷେତ୍ରରେ ପ୍ରଭାବଶାଳୀ ଶିଳ୍ପୀ ପରୀକ୍ଷକର ଶିଳ୍ପ ବିଚାରରେ ସନ୍ତୁଷ୍ଟ ହୋଇ ନଥିଲେ ଏବଂ ଯେଉଁ କ୍ଷେତ୍ରରେ ପରୀକ୍ଷାର ଆବଶ୍ୟକତା ଅଥବା ପରୀକ୍ଷକର ଭୂମିକାକୁ ଅବଜ୍ଞା ନକରି ଶିଳ୍ପୀ ଅନ୍ୟ ଜଣେ ଉଚ୍ଚକୋଟିର ପରୀକ୍ଷକକୁ ଅପେକ୍ଷା କରୁଥିଲେ ଭବଭୂତିଙ୍କର ନୂତନ ଧରଣର କରୁଣ ରସାତ୍ମକ ନାଟକ ପ୍ରଥମେ ପରୀକ୍ଷକମାନଙ୍କଦ୍ୱାରା ଆଦୃତ ହୋଇନଥିଲା । କିନ୍ତୁ ତାଙ୍କର ଅଖଣ୍ଡ ଆତ୍ମବିଶ୍ୱାସ ହେତୁ ସେ ସେଥିରେ ନିରାଶ ହୋଇ ନଥିଲେ କିମ୍ବା ତତ୍କାଳୀନ ପରୀକ୍ଷକମାନଙ୍କର ମତକୁ ସ୍ୱୀକାର ମଧ୍ୟ କରି ନଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ସେ ଜଣେ ଯଥାର୍ଥ ଶିଳ୍ପୀ । କିନ୍ତୁ ତାଙ୍କର ଶିଳ୍ପର ଯଥାଯଥ ପରୀକ୍ଷା ସେତେବେଳେ ହୋଇପାରି ନଥିଲେ ମଧ୍ୟ ଭବିଷ୍ୟତରେ ନିଶ୍ଚୟ ତାହା ବିଦ୍ୱାନ୍ ପରୀକ୍ଷକଙ୍କଦ୍ୱାରା ସାଧୁ ପ୍ରମାଣିତ ହେବ । ଏଠାରେ ଲକ୍ଷ୍ୟ କରିବା କଥା, ନୈରାଶ୍ୟଜନିତ କ୍ରୋଧବଶତଃ କବି ଭବଭୂତି ସମଗ୍ର ପରୀକ୍ଷକ ସମାଜକୁ ଅବଜ୍ଞାକରି କହି ନାହାନ୍ତି-- "କୌଣସି ପରୀକ୍ଷକ ମୋର ନାଟକକୁ ଆଦର ନକରୁ ସେଗୁଡ଼ା କିଛି ଜାଣନ୍ତି ନାହିଁ । ସେମାନଙ୍କର ମନ୍ତବ୍ୟ ମଧ୍ୟ ଅନାବଶ୍ୟକ ମୁଁ ଯାହା ଲେଖିଛି ସବୁ ଠିକ୍ ।" ବରଂ କହିଛନ୍ତି "ଯେହେତୁ କାଳ ଅନନ୍ତ ଏବଂ ପୃଥିବୀ ଅପରିସୀମ" ମୋର ବିଶ୍ୱାସ, ଭବିଷ୍ୟତରେ ମୋର ସମାନଧର୍ମୀ ପରୀକ୍ଷକ ଆସିବେ(ଏବଂ ମୋର ନାଟକକୁ ଆଦର କରିବେ)।" ଶିଳ୍ପୀ ଯେତେ

ବଡ଼ ହେଉନା କାହିଁକି ତାର ସୃଷ୍ଟିର ପରୀକ୍ଷା ନିତାନ୍ତ ଆବଶ୍ୟକ । ସେ ନିଜ ପାଇଁ ସୃଷ୍ଟି କରେ ନା, କରେ ଅନ୍ୟ ପାଇଁ ଏବଂ ସେହି ଅନ୍ୟ ଜଣଙ୍କର ସନ୍ତୋଷ ବିଧାନ ନ କରିବା ପର୍ଯ୍ୟନ୍ତ ତାର ସୃଷ୍ଟିର ସାର୍ଥକତା ନାହିଁ ।

ଅତଏବ ସ୍ରଷ୍ଟା ସହିତ ସମୀକ୍ଷକଙ୍କୁ ତୁଳନାକରି ଗୋଟିକୁ ଅପର ଠାରୁ ଉଚ୍ଚ ବା ନୀଚ କରିବାର ଯଥାର୍ଥତା ବା ତାର୍କିକତା ନାହିଁ । ସ୍ରଷ୍ଟା ସହିତ ସ୍ରଷ୍ଟାର ଅଥବା ସମୀକ୍ଷକ ସହିତ ସମୀକ୍ଷକର ତୁଳନା କରାଯାଇ ସେମାନଂକର ବର୍ଗୀକରଣ ହୋଇପାରେ । ଜଣେ କବି ଅନ୍ୟ ଜଣେ କବିଙ୍କର ଠାରୁ ଉତ୍ତମ ବା ଅଧମ ହୋଇପାରନ୍ତି । ଏବଂ ସେହିପରି ଜଣେ ସମୀକ୍ଷକ ଅନ୍ୟ ଜଣେ ସମୀକ୍ଷକଂକଠାରୁ ଉତ୍ତମ ବା ଅଧମ ହୋଇପାରନ୍ତି । କବି ଭବଭୂତି ନିଜ ସହିତ ନିଜ ସମୀକ୍ଷକମାନଙ୍କୁ ତୁଳନାକରି ସେମାନଙ୍କୁ ଅବଜ୍ଞା କରିନାହାନ୍ତି । ବରଂ ସେମାନଂକଠାରେ ଆଦର୍ଶ ସମୀକ୍ଷକର ଗୁଣ ଅଭାବ ଥିବା ଲକ୍ଷ୍ୟକରି ଉପଯୁକ୍ତ ସମୟରେ ଉପଯୁକ୍ତ ସମୀକ୍ଷକର ଅପେକ୍ଷା କରିଛନ୍ତି । ବସ୍ତୁତଃ ସମୀକ୍ଷକମାନେ ହିଁ କବିମାନଙ୍କୁ କାଳେ କାଳେ ବଡ଼ କରି ଆସିଛନ୍ତି । ସେମାନେ ନିଜେ ନିଜେ ବଡ଼ ହୋଇନାହାନ୍ତି ।

ପୁନଶ୍ଚ ସୃଷ୍ଟି ବା ସୃଜନୀ ଶକ୍ତିକୁ ଯଦି ଏକ ଉଚ୍ଚକୋଟୀର କ୍ରିୟା ଭାବରେ ଗ୍ରହଣ କରାଯାଏ, ତେବେ ସମୀକ୍ଷା ମଧ୍ୟ ଏକ ସୃଜନ ବା ସୃଜନୀ ଶକ୍ତିର କ୍ରିୟା । ଏହା ପ୍ଲାଟୋ, ଅଥର୍ବତା, କମ୍ଭା ନିବେଦତା ନୁହେଁ, ଆଦର୍ଶବାଦୀ ଦର୍ଶନ ଅଥବା ବେଦାନ୍ତ ମତରେ ସମସ୍ତ ପ୍ରକାର ସମୀକ୍ଷା ଅଥବା ପ୍ରମାଣ କ୍ରିୟା (act of cognition), ଅନୁଭୂତି (experience) ଉପରେ ନିର୍ଭରକରେ ଏବଂ ଅନୁଭୂତି ଏକ ସୃଜନ ପ୍ରକ୍ରିୟା (creative process) । ଦଶମ ଶତାବ୍ଦୀର ଭାରତୀୟ ଆଚାର୍ଯ୍ୟ ଭଟ୍ଟତୋତ ଏହି ସୃଜନୀ ପ୍ରକ୍ରିୟାକୁ 'ପ୍ରତିଭା' ନାମରେ ଅଭିହିତ କରିଛନ୍ତି ଏବଂ ତା'ର ବ୍ୟାଖ୍ୟାକରି କହିଛନ୍ତି –ମନୀଷର ଯେଉଁ ପ୍ରଜ୍ଞା ନିତ୍ୟ ନୂତନ ଭାବେ ପ୍ରକାଶିତ ହୁଏ ତାହାହିଁ ପ୍ରତିଭା । ଭଟ୍ଟତୋତଙ୍କ ମତରେ ଅଭିନବ ଗୁପ୍ତ ଏହାକୁ ଅପୂର୍ବ ବସ୍ତୁ ନିର୍ମାଣ କରିବାର କ୍ଷମତା ମଧ୍ୟ କହିଛନ୍ତି ।

ଦଶମ ଶତାବ୍ଦୀର ଆଚାର୍ଯ୍ୟ ରାଜଶେଖର ପ୍ରତିଭାକୁ ଏକ ଶକ୍ତିବିଶେଷ ଭାବରେ ଗ୍ରହଣ କରିଛନ୍ତି । ସେହି ଶକ୍ତି ଚମତ୍କାର ଅନୁଭୂତ ଏବଂ ତା'ର ପ୍ରକାଶଦ୍ୱାରା ପରିଷ୍ଫୁଟ ହୋଇଥାଏ । ତାଙ୍କ ଭାଷାରେ—"ଶକ୍ତି ଶବ୍ଦର ଲାକ୍ଷଣିକ ଅର୍ଥ ପ୍ରତିଭା ଏବଂ ଯେଉଁ ଶକ୍ତିଦ୍ୱାରା କବିଙ୍କର ଅଭିଜ୍ଞତା ଓ ପ୍ରକାଶ ଉଭୟର ଅପରିପକ୍ୱତା ବା ଅସାମର୍ଥ୍ୟ ସବୃତ ହୋଇଯାଏ ତାହା ବ୍ୟୁତ୍ପତ୍ତି ।" ତାଙ୍କର ପୂର୍ବପୁରୁ ଆଚାର୍ଯ୍ୟ ମଙ୍ଗଳ ପ୍ରତିଭାଠାରୁ ବ୍ୟୁତ୍ପତ୍ତିକୁ ଉତ୍କୃଷ୍ଟ ବୋଲି ମତ ଦେଇଛନ୍ତି । କିନ୍ତୁ ରାଜଶେଖର ଉଭୟକୁ କବି-ଶକ୍ତିର ଆଧାରଭାବେ ଗ୍ରହଣ କରିଛନ୍ତି । ଅନୁଧ୍ୟାନ କଲେ ଜଣାଯାଏ ପ୍ରତିଭା କବିଙ୍କର କଳ୍ପନାଶକ୍ତି ଏବଂ ବ୍ୟୁତ୍ପତ୍ତି ଅନେକାଂଶତଃ ପ୍ରଜ୍ଞାଶକ୍ତି । କଳ୍ପନାଶକ୍ତି ଅଲୌକିକୀ ଏବଂ ପ୍ରଜ୍ଞା ଲୌକିକୀ । କବିଙ୍କର ମୁଖ୍ୟଶକ୍ତି ଅଲୌକିକୀ ହେଲେ ମଧ୍ୟ ଲୌକିକୀ ଶକ୍ତି ବା ଲୌକିକ ସମ୍ବନ୍ଧୀୟ ଜ୍ଞାନ—ଯଥା ଉପସ୍ଥିତ ବସ୍ତୁର ବୃଦ୍ଧି, ଇତିହାସ, ଦର୍ଶନ, ତର୍କ, ଧର୍ମ, ଶ୍ରୁତି, ସ୍ମୃତି ଓ ଅର୍ଥଶାସ୍ତ୍ରାଦିରେ ବ୍ୟୁତ୍ପତ୍ତି ନିତାନ୍ତ ଆବଶ୍ୟକ । ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ କବିଙ୍କର ଶକ୍ତିକୁ ପ୍ରତିଭା ଏବଂ ବ୍ୟୁତ୍ପତ୍ତି ଭାବରେ ଦ୍ୱିଧାବିଭକ୍ତ ନକରି ବ୍ୟୁତ୍ପତ୍ତିକୁ କବି ପ୍ରତିଭାର ଏକ ଆବଶ୍ୟକୀୟ ଅଙ୍ଗ କହିବା ଅଧିକ ଯୁକ୍ତିଯୁକ୍ତ ହେବ ।

ରାଜଶେଖର କବିର ଏହି ସୃଜନକ୍ଷମା ଶକ୍ତିକୁ ଦ୍ୱିଧା ବିଭକ୍ତ କରିଛନ୍ତି । ଗୋଟିଏ କାରୟିତ୍ରୀ ଏବଂ ଅନ୍ୟଟି ଭାବୟିତ୍ରୀ । ଏହି କାରୟିତ୍ରୀ ପ୍ରତିଭାକୁ ଇଂରାଜୀରେ Creative genius କୁହାଯାଇପାରେ । ଯାହା Creative writings ଅର୍ଥାତ୍ କାବ୍ୟନାଟକାଦିରେ ପରିସ୍ଫୁଟ ହୋଇଥାଏ । ରାଜଶେଖର ଏହି ପ୍ରତିଭାକୁ ପୁନଶ୍ଚ ସହଜା ( inborn ), ଆହାର୍ଯ୍ୟା (acquired) ଏବଂ ଔପଦେଶିକୀ ( trained ) ଭାବରେ ଉପ-ବିଭକ୍ତ କରିଛନ୍ତି ।

କବିଶକ୍ତି ବା ପ୍ରତିଭାର ଅପର ଦିଗଟି ହେଲା ଭାବୟିତ୍ରୀ । ଏହି ଶକ୍ତିର ଅଧିକାରୀ କବିଙ୍କୁ କୁହାଯାଏ ଭାବୁକ ବା ଆଲୋଚକ । ଏହି ଭାବୟିତ୍ରୀ ପ୍ରତିଭା କାରୟିତ୍ରୀ ପ୍ରତିଭାର ଅପକର୍ତ୍ତ୍ରୀ ନୁହେଁ, ବରଂ ଉପକର୍ତ୍ତ୍ରୀ । ରାଜଶେଖରଙ୍କ

ସାହାରେ ଭାବକକବି କାରକ-କବିର କବିତା-ଲତାକୁ ସଫଳ କରିଥା'ନ୍ତି । ତଦ୍‌ବିନା ଏହି କବିତା-ସୃଷ୍ଟି ନିଷ୍ଫଳ ହୋଇଯାଏ । କାବ୍ୟ ଯଦି ଆଲୋଚକ ମାନଂକ ଦ୍ୱାରା ଦେଶବିଦେଶରେ ପ୍ରଶଂସିତ ଏବଂ ପ୍ରଚାରିତ ହୋଇ ନ ପାରେ ତେବେ ସେ ରଚନାର ମୂଲ୍ୟ କ'ଣ ?'' ବସ୍ତୁତଃ କବିର କବିତ୍ୱ ନିର୍ଭର କରେ ସମୀକ୍ଷକଙ୍କର ସ୍ୱୀକୃତି ଉପରେ । ପ୍ରାଚୀନ ଆଚାର୍ଯ୍ୟଙ୍କ ମତକୁ ସମର୍ଥନ କରି ସେ କହିଛନ୍ତି 'କାରକ-କବି ଏବଂ ଭାବକ-କବିଙ୍କ ମଧ୍ୟରେ କୌଣସି ଭେଦ ନାହିଁ (କବିର୍ଭାବସୃତ ଭାବକଶ୍ଚ କବିଃ) । କିନ୍ତୁ ଅନ୍ୟ କେତେକ ଆଚାର୍ଯ୍ୟ କବି ଏବଂ ସମୀକ୍ଷକଙ୍କ ମଧ୍ୟରେ ଭେଦ ସ୍ୱୀକାର କରିଛନ୍ତି । ରାଜଶେଖର ଏ ସମ୍ପର୍କରେ କାଳିଦାସଙ୍କୁ ଉଦ୍ଧୃତ କରିଛନ୍ତି—'ଜଣେ ଶବ୍ଦ ରଚନା'' କରିବାରେ ନିପୁଣ ଏବଂ ଅନ୍ୟ ଜଣକ ଶୁଣିବାରେ 'ଧୂରିଣ' । (ହେ କବି,) ତୁମର ଉଭୟ ପ୍ରକାର କଲ୍ୟାଣମୟୀ ମତି (ଶକ୍ତି) ଅତି ଆଶ୍ଚର୍ଯ୍ୟ-ଜନକ । ଏକତ୍ର ଅନେକ ଗୁଣର ସମନ୍ୱୟ କଠିନ । ଗୋଟିଏ ପ୍ରସ୍ତର ଖଣ୍ଡ ସୁବର୍ଣ୍ଣ ଉତ୍ପନ୍ନ କରିଥାଏ ଏବଂ ଅନ୍ୟ ଏକ ପ୍ରସ୍ତର ଖଣ୍ଡ (ଯଥା କଷଟି) ତାର ପରୀକ୍ଷା କରିଥାଏ ।'' ଅର୍ଥାତ୍ ସୁବର୍ଣ୍ଣର ଉତ୍ପାଦନ ଏବଂ ପରୀକ୍ଷା ପ୍ରସ୍ତର ଖଣ୍ଡ ଦ୍ୱାରା ହୋଇଥିଲେ ମଧ୍ୟ ଯେଉଁ ପ୍ରସ୍ତରଖଣ୍ଡ ସୁବର୍ଣ୍ଣ ଉତ୍ପନ୍ନ କରେ ତାହା ସୁବର୍ଣ୍ଣର ପରୀକ୍ଷା କରିପାରେ ନାହିଁ କିମ୍ବା ଯେଉଁ ପ୍ରସ୍ତର ଖଣ୍ଡ ସୁବର୍ଣ୍ଣ ପରୀକ୍ଷା କରେ ତାହା ସୁବର୍ଣ୍ଣ ଉତ୍ପାଦନ କରିପାରେ ନାହିଁ । କିନ୍ତୁ ଏହି ଉଦାହରଣଟି ଉପସ୍ଥିତ ପ୍ରସଙ୍ଗରେ ଉପଯୁକ୍ତ ହୋଇପାରିନାହିଁ । କାରଣ ସୁବର୍ଣ୍ଣ ଏବଂ କଷଟି ପଥର ମଧ୍ୟରୁ ସୁବର୍ଣ୍ଣ ହିଁ ଅଧିକ ମୂଲ୍ୟବାନ୍ ହୋଇଥିବା ସ୍ଥଳେ କବି ଏବଂ ସମୀକ୍ଷକ ମଧ୍ୟରେ କେହି କାହାକୁ ଊଣା ନୁହନ୍ତି । ତେବେ ଗୋଟିଏ ଦୃଷ୍ଟିରୁ ଉଦାହରଣଟି ତାତ୍ପର୍ଯ୍ୟପୂର୍ଣ୍ଣ ହୋଇପାରେ । ଉଭୟ ପ୍ରସ୍ତର ଖଣ୍ଡର ଜାତି ବା **genus** ଏକ ହେଲେ ମଧ୍ୟ ପ୍ରଜାତି ବା **species** ଭିନ୍ନ । ସେହିପରି କାରକ କବି ଏବଂ ଭାବକ-କବି ଉଭୟ ସ୍ୱରୂପତଃ, ସଜାତୀୟ ପ୍ରତିଭାବାନ୍ ହେଲେ ମଧ୍ୟ ବିଷୟ ଭେଦରେ ଭିନ୍ନ ।

କବି ଏବଂ ସମୀକ୍ଷକ ସ୍ୱରୂପତଃ ସ୍ରଷ୍ଟା । ଏ ଦୃଷ୍ଟିରୁ ସମସ୍ତ ସମୀକ୍ଷା ସର୍ଜନାତ୍ମକ ବା ସୃଜନଧର୍ମୀ । ଭାରତୀୟ ପରମ୍ପରାରେ ସମୀକ୍ଷାର ଗୁଣାତ୍ମକ

ବଗୀକରଣ କରାଯାଇଛି । ଜୈନ ଆଚାର୍ଯ୍ୟ ମଙ୍ଗଳ ସମୀକ୍ଷକର ଦୁଇଟି ଭେଦ ଦେଖାଇଛନ୍ତି—ଅରୋଚକୀ ଏବଂ ସତୃଣା ଭ୍ୟବହାରୀ । କିନ୍ତୁ କବି ରାଜଶେଖର ଚାରି ପ୍ରକାର ଭେଦର ସମର୍ଥନ କରିଛନ୍ତି : ଅରୋଚକୀ, ସତୃଣାଭ୍ୟବହାରୀ, ମତ୍ସରୀ ଏବଂ ତତ୍ତ୍ୱାଭିନିବେଶୀ । ଅରୋଚକୀ ସମୀକ୍ଷକ ରୁଚି ବାଗୀଶ ବା fastidious । ଏ ପ୍ରକାର ସମୀକ୍ଷକଙ୍କର ଅରୋଚକତା ସ୍ୱଭାବଗତ (natural, in born ) ଅଥବା ଜ୍ଞାନଜନ୍ୟ (resonable) ହୋଇପାରେ । ଯେଉଁ ସମୀକ୍ଷକ ସ୍ୱଭାବତଃ ରୁଚିବାଗୀଶ କୌଣସି ରଚନା ତାଙ୍କର ପସନ୍ଦ ମୁତାବକ ହୁଏନା । ସବୁଥିରେ ସେ ଦେଖନ୍ତି ଅସଂପୂର୍ଣ୍ଣତା । ଶତ ଚେଷ୍ଟା ସତ୍ତ୍ୱେ ତାଙ୍କର ଏଇ ରୁଚିଗତ ଅସନ୍ତୋଷ ଦୂର ହୁଏନା । ଜ୍ଞାନଜନ୍ୟ ଅରୋଚକତା କ୍ୱଚିତ କ୍ଷେତ୍ରରେ ପ୍ରତିଭା ସମ୍ପନ୍ନ କବିଙ୍କ ରଚନାକୁ ପସନ୍ଦ କରିଥାଏ । ସତୃଣାଭ୍ୟବହାରୀ ସମୀକ୍ଷକଙ୍କୁ ଇଂରାଜୀରେ କୁହାଯାଇପାରେ naive critic । ଏ ପ୍ରକାର ସମୀକ୍ଷକ କୌତୂହଳବଶତଃ ସବୁଥି କିଛି ନା କିଛି ଗୁଣ ବା ନୂତନତ୍ୱ ଦେଖିଥାନ୍ତି । ଗଭୀର ସ୍ତରକୁ ନଯାଇ ସବୁ ବିଷୟରେ ପ୍ରଂଶସାସୂଚକ ଲଘୁ ମନ୍ତବ୍ୟମାନ ଦେଇଥାନ୍ତି । ଏମାନେ ଅନେକ ସମୟରେ କବିଙ୍କ ରଚନାରେ ଥିବା ଗୁଣଗୁଡ଼ିକ ଗ୍ରହଣ ନ କରି ନିଜ ମନରୁ ସେଥିରେ ଅନେକ କିଛି ଯୋଗ କରିଥାନ୍ତି । ମତ୍ସରୀ ସମୀକ୍ଷକ କାବ୍ୟରଚନାର ଉତ୍କର୍ଷ ଅନୁଭବ କରି ମଧ୍ୟ ସେଗୁଡ଼ିକୁ ବାଦ୍ ଦେଇ ଦୋଷଗୁଡ଼ିକୁ ହିଁ ଦେଖାଇଥାନ୍ତି । କାରଣ ଅପରର ଗୁଣମାନ ସେମାନଙ୍କୁ କଡ଼ କଷ୍ଟ ଦେଇଥାଏ । ମାତ୍ସର୍ଯ୍ୟ ରହିତ ଗୁଣଜ୍ଞ ସମୀକ୍ଷକଙ୍କ ସଂଖ୍ୟା ଖୁବ୍ କମ୍ । ଏମାନଙ୍କୁ କୁହାଯାଏ ତତ୍ତ୍ୱାଭିନିବେଶୀ । ରାଜଶେଖର କହିଛନ୍ତି କବିଙ୍କର ଅଶେଷ ପୁଣ୍ୟ ପ୍ରଭାବରୁ ହିଁ ଏହିପରି ସମୀକ୍ଷକ ସେମାନଙ୍କୁ ମିଳିଥାଏ । ସେମାନେ ଶବ୍ଦରଚନାର ଯଥାର୍ଥ ଅନୁଶୀଳନ କରି ତାହାର ଗୂଢ଼ ତାତ୍ପର୍ଯ୍ୟାନୁସନ୍ଧାନ ପୂର୍ବକ ରସାସ୍ୱାଦନ କରିଥାନ୍ତି । କିନ୍ତୁ ଭାରତୀୟ ପରମ୍ପରାରେ ସମୀକ୍ଷକମାନଙ୍କର ( ସ୍ୱାତ୍ମକ ବା ଭିତ୍ତିମୂଳକ functional) ବିଭାଜନ ଦେଖାଯାଏ ନାହିଁ । ପାଶ୍ଚାତ୍ୟ ପରମ୍ପରାରେ ଏ ଦୃଷ୍ଟିରୁ ସମୀକ୍ଷାକୁ ଚାରିଭାଗରେ ବିଭକ୍ତ କରାଯାଇଛି —ପ୍ରଣାଳୀ (Technical) ସାମାଜିକୀ ( Social ), ଅନୁଶୀଳନୀ ( Practical ) ଏବଂ ସୈଦ୍ଧାନ୍ତିକୀ ( Theoritical ) । କେତେକ ବିଚାରଧର୍ମୀ ( judicial ) ସମୀକ୍ଷା

ନାମରେ ଏକ ପଞ୍ଚମଭେଦ ମଧ୍ୟ ଦେଖାଇଥାନ୍ତି । କିନ୍ତୁ ବର୍ଗୀକରଣ ବା ମୂଲ୍ୟାୟନ ସମସ୍ତ ସମୀକ୍ଷାର ଧର୍ମ ହେତୁ ସବୁ ସମୀକ୍ଷାକୁ ବର୍ଗୀକରଧର୍ମୀ କୁହାଯାଇ ପାରେ ! ଏ ଦୃଷ୍ଟିରୁ ତାହାର ଏକ ସ୍ୱତନ୍ତ୍ର ବିଭାଜନ ଅମୂଳକ ।

ପ୍ରଶିକ୍ଷଣୀ ସମୀକ୍ଷାକୁ କୁହାଯାଏ ସର୍ଜନାତ୍ମକ ସମୀକ୍ଷା (Creative-Criticism )। ଏହା କବି ସୃଷ୍ଟି ସମ୍ପର୍କରେ, ଅର୍ଥାତ ଉଚ୍ଚକୋଟୀର କାବ୍ୟ-କବିତା ଯେଉଁ ଉପାୟରେ ଲେଖାଯାଇପାରେ ତାର କୌଶଳାଦି ସମ୍ପର୍କରେ ପ୍ରଶିକ୍ଷଣ ଦେଇଥାଏ ବା ପଥପ୍ରଦର୍ଶନ କରିଥାଏ । ଏହାକୁ ନୀତି-ଧର୍ମୀ (Didactic) ଏବଂ ବ୍ୟାବହାରିକ ( Pragmatic ) ସମୀକ୍ଷା ମଧ୍ୟ କୁହାଯାଏ । T. S. Eliot ଏହାକୁ କାରଖାନା-ସମୀକ୍ଷା (Work-shop Criticism ) ନାମରେ ନାମିତ କରିଛନ୍ତି । ପ୍ରଶିକ୍ଷଣ ସମୀକ୍ଷାର ଆରମ୍ଭ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ରୋମୀୟ ଆଚାର୍ଯ୍ୟ କ୍ୱିନ୍ତିଲିୟାନ୍‌ଙ୍କ ଠାରୁ । ତାଙ୍କ ପୂର୍ବରୁ ସିସେରୋ, ଡେମେଟ୍ରିୟସ୍ ପ୍ରଭୃତି ବାଚନ ତଥା ଲେଖନ ଶୈଳୀ ସଂପର୍କରେ ଗ୍ରନ୍ଥ ରଚନା କରିଥିଲେ ମଧ୍ୟ ସମ୍ଭବତଃ ପ୍ରଥମଥର ପାଇଁ ବକ୍ତାମାନଙ୍କୁ ସିଧାସଳଖ ପ୍ରଶିକ୍ଷଣ ଦେବା ଉଦ୍ଦେଶ୍ୟରେ କ୍ୱିନ୍ତିଲିୟାନ ଖ୍ରୀଷ୍ଟୀୟ ୯୩ ଅବ୍ଦରେ 'ବାଗ୍ମୀ ପ୍ରଶିକ୍ଷଣ' ( Training of an Orator ) ଗ୍ରନ୍ଥ ରଚନା କରିଥିଲେ । ସେଥିରେ ସେ ଉଚ୍ଚକୋଟୀର ରଚନାର ବିଷୟବସ୍ତୁ, ଭାଷା, ଔଚିତ୍ୟ ଓ ରୁଚିବୋଧ ଇତ୍ୟାଦି ସଂପର୍କରେ ଆଲୋଚନା କରିଛନ୍ତି । ଭାରତୀୟ ପରମ୍ପରାରେ ଏପ୍ରକାର ସମାଲୋଚନାକୁ କୁହାଯାଇଛି 'କବିଶିକ୍ଷା' ଏବଂ ଏହାର ରଚନାକାଳ ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ । କବିଶିକ୍ଷା ସମ୍ବନ୍ଧୀୟ ମୁଖ୍ୟ ଗ୍ରନ୍ଥକାର ହେଲେ ରାଜଶେଖର, କ୍ଷେମେନ୍ଦ୍ର, ଅମରଚନ୍ଦ୍ର, ଅରିସିଂହ ଓ ଦେବେଶ୍ୱର । କବିଶିକ୍ଷାର ଆଚାର୍ଯ୍ୟମାନେ ବିଶ୍ୱାସ କରନ୍ତି ଯେ କାବ୍ୟ ସୃଷ୍ଟିପାଇଁ ଆବଶ୍ୟକ ପ୍ରତିଭା ଏକ ଜନ୍ମଗତ ବିଶିଷ୍ଟ ଶକ୍ତିହେଲେ ମଧ୍ୟ ତାହାର ଯଥାଯଥ ନିୟନ୍ତ୍ରଣ, ପ୍ରୟୋଗ ଓ ପ୍ରକାଶ ଆଦି ପାଇଁ ପ୍ରଶିକ୍ଷଣ ଆବଶ୍ୟକ । ପ୍ରତିଭା ନଥାଇ କେବଳ ପ୍ରଶିକ୍ଷଣଦ୍ୱାରା ଜଣେ ଉଚ୍ଚକୋଟୀର କବି ହୋଇ ନ ପାରିଲେ ବି କିଛିନା କିଛି ଲେଖିପାରିବେ । କିନ୍ତୁ କେବଳ ପ୍ରତିଭା କାବ୍ୟ ରଚନାପାଇଁ ପର୍ଯ୍ୟାପ୍ତ ନୁହେଁ । ବସ୍ତୁତଃ, ପ୍ରତିଭା ଏବଂ ପ୍ରଶିକ୍ଷଣର ମଣିକାଞ୍ଚନ

ସଂଯୋଗରେ ହିଁ ଉଚ୍ଚକୋଟୀର କାବ୍ୟ ସୃଷ୍ଟି ସମ୍ଭବ । ରାଜଶେଖର ତିନି ପ୍ରକାର କାରୟିତ୍ରୀ ପ୍ରତିଭା ସ୍ୱୀକାର କରିଛନ୍ତି—ସହଜା, ଆହାର୍ଯ୍ୟା ଓ ଔପଦେଶିକୀ । ଏବଂ ତିନିପ୍ରକାର ପ୍ରତିଭାରୁ ଯଥାକ୍ରମେ ତିନିପ୍ରକାର କାରକ-କବିଙ୍କର ସୃଷ୍ଟି—ସାରସ୍ୱତ, ଆଭ୍ୟାସିକ ଏବଂ ଔପଦେଶିକ । ଜନ୍ମଜନ୍ମାନ୍ତରର ସଂସ୍କାରବଶତଃ ଆଜନ୍ମ ପ୍ରତିଭାଧର କବି ସାରସ୍ୱତ । ଯେଉଁ କବିଙ୍କର ଏହି ସାରସ୍ୱତ ପ୍ରତିଭା ଜନ୍ମ କାଳରେ ସୁପ୍ତଥାଏ କିନ୍ତୁ ପରେ ଅଭ୍ୟାସ ଦ୍ୱାରା ଉଦ୍ଦୀପ୍ତ ହୁଏ ସେ ଆଭ୍ୟାସିକ ଏବଂ ଜନ୍ମରୁ ମନ୍ଦବୁଦ୍ଧି ହୋଇ ମଧ୍ୟ ନିରନ୍ତର ମନ୍ତ୍ରୋପଦେଶାଦି ସାଧନା ବା ଅନୁଷ୍ଠାନଦ୍ୱାରା ଯେ ସାରସ୍ୱତ ପ୍ରତିଭା ଲାଭ କରନ୍ତି ସେ ଔପଦେଶିକ । ଶ୍ୟାମଦେବ ପ୍ରଭୃତି କେତେକ ଆଚାର୍ଯ୍ୟ ଏହି ତିନିପ୍ରକାର କବିଙ୍କୁ ଯଥାକ୍ରମେ ଉତ୍ତମ, ମଧ୍ୟମ ଓ ଅଧମ ଆଖ୍ୟା ଦେଇଛନ୍ତି । ସେମାନଙ୍କ ମଧ୍ୟରେ ପ୍ରଥମ ଦୁଇଶ୍ରେଣୀର କବିଙ୍କ ପାଇଁ ଗ୍ରନ୍ଥୋପଦେଶର ଆବଶ୍ୟକତା ନାହିଁ । କିନ୍ତୁ ରାଜଶେଖର ଏହାକୁ ଅସ୍ୱୀକାରକରି କହିଛନ୍ତି ଜନ୍ମଗତ ପ୍ରତିଭା ସହିତ କାବ୍ୟ ଓ କାବ୍ୟାଙ୍ଗ ବିଦ୍ୟାର ଅଭ୍ୟାସ, ବୁଦ୍ଧିମତ୍ତା ଏବଂ ମନ୍ତ୍ରାନୁଷ୍ଠାନଲବ୍ଧ ଦୈବୀଶକ୍ତି ସଂଯୋଗହେବା ଅତୀବ ଦୁର୍ଲଭ । ଏପରି ସଂଯୋଗଶୀଳ କବି ହିଁ କାବ୍ୟରାଜ୍ୟର ଚକ୍ରବର୍ତ୍ତୀ । 'କାବ୍ୟ ମୀମାଂସା'ର ଦଶମ ଅଧ୍ୟାୟରେ ରାଜଶେଖର କବିଙ୍କର ଚରିତ, ଶୀଳ, ପ୍ରଭାବ ଅଧ୍ୟୟନ ତଥା ଅଭ୍ୟାସ ସମ୍ବନ୍ଧରେ ଅତି ବିସ୍ତୃତ ବିବରଣୀ ଦେଇଛନ୍ତି । ଉପର୍ଯ୍ୟୁକ୍ତ ତିନିପ୍ରକାର କବି ବ୍ୟାକରଣ, ଶବ୍ଦକୋଷ, ଛନ୍ଦ ଏବଂ ଅଳଙ୍କାରାଦି କାବ୍ୟୋପଯୋଗୀ ବିଦ୍ୟା, ଚତୁଃଷଷ୍ଟିକଳାଦି କାବ୍ୟର ଉପବିଦ୍ୟାରେ ନିଷ୍ଣାତ ହେବା ଉଚିତ । ତାଛଡ଼ା ସଜ୍ଜନ ଓ ଉଚ୍ଚକୋଟୀର ବିଦ୍ୱାନମାନଙ୍କର ସଙ୍ଗ, ଦେଶବିଦେଶର ବାର୍ତ୍ତା, ସାଂସାରିକ ବ୍ୟବହାର, ବିଦ୍ୱାନମାନଙ୍କର ମନ୍ତବ୍ୟ, ପ୍ରାଚୀନ କବି-ମାନଙ୍କର ଅଧ୍ୟୟନ ଓ ମନନ ମଧ୍ୟ ଏକାନ୍ତ ଆବଶ୍ୟକ । ବସ୍ତୁତଃ, କେବଳ ପ୍ରତିଭାଦ୍ୱାରା କୌଣସି ବ୍ୟକ୍ତି କବି ହୋଇପାରିବେ ନାହିଁ । ସେହି ପ୍ରତିଭାର ବିକାଶ ଏବଂ ପ୍ରକାଶ ପାଇଁ ସୁନ୍ଦର ସ୍ୱାସ୍ଥ୍ୟ, ମାନସିକ ପବିତ୍ରତା ତଥା ନିର୍ମଳତା, ଆର୍ଥିକ ସ୍ୱଚ୍ଛଳତା, ରମଣୀୟ ବାସଭୂମି, ମଧୁମୟ ପାରିବାରିକ ଜୀବନ, ନୀରବ ନିର୍ଜନ ତଥା ପ୍ରାକୃତିକ ସୌନ୍ଦର୍ଯ୍ୟମୟ ପରିବେଶ ଆଦି ନିତାନ୍ତ

ଆବଶ୍ୟକ । ଏକ ବାକ୍ୟରେ କହିଲେ କବିର ସୃଷ୍ଟିମୂଳରେ ରହିଛି ଏକାଧାରରେ ଆଠୋଟିଉତ୍ସ—ସ୍ୱାସ୍ଥ୍ୟ, ପ୍ରତିଭା, ଅଭ୍ୟାସ, ଭକ୍ତି, ବିଦ୍ୱତ୍କଥା, ବହୁଶ୍ରୁତତା, ସ୍ମୃତି, ଦୃଢ଼ତା ଏବଂ ଉତ୍ସାହ । ଏ ଆଠଟି କବିଙ୍କର ଅଷ୍ଟ ମାତୃଶକ୍ତି ।

ରାଜଶେଖରଙ୍କର ପରେ ଆଚାର୍ଯ୍ୟ କ୍ଷେମେନ୍ଦ୍ର ମଧ୍ୟ ତାଙ୍କର 'କବି କଣ୍ଠା-ଭରଣ'ରେ କାବ୍ୟ ସୃଷ୍ଟି ପାଇଁ କେବଳ ପ୍ରତିଭାକୁ ପର୍ଯ୍ୟାପ୍ତ ଭାବରେ ଗ୍ରହଣ କରି ନାହାନ୍ତି । ସେଥିପାଇଁ ଉପଦେଶ ଏବଂ ଉଦ୍ୟମକୁ ଆବଶ୍ୟକ ମନେକରି କହିଛନ୍ତି କବିତ୍ୱ ଶକ୍ତିରେ ରହିଛି ଏକାଧାରରେ ଦୁଇଟି ଉତ୍ସ—ଦିବ୍ୟ ପ୍ରଯତ୍ନ ବା ଦୈବୀଶକ୍ତି ଏବଂ ପୌରୁଷ ବା ବ୍ୟକ୍ତିଗତ ପ୍ରଚେଷ୍ଟା । ରାଜଶେଖରଙ୍କ ପରି ସେ ମଧ୍ୟ ସ୍ୱୀକାର କରନ୍ତି ଯେ ପ୍ରତ୍ୟେକ କବି ତାର ପୂର୍ବ କବିମାନଙ୍କର ଅଧ୍ୟୟନ କରି ସେମାନଙ୍କ ଦ୍ୱାରା ପ୍ରଭାବିତ ହେବା ଉଚିତ । ଏହି ପ୍ରଭାବର ପରିମାଣ ଦୃଷ୍ଟିରୁ କ୍ଷେମେନ୍ଦ୍ର କବିମାନଙ୍କୁ ଚାରି ଭାଗରେ ବିଭକ୍ତ କରିଛନ୍ତି । ଯେ ଅନ୍ୟର ଭାବକୁ ଆହରଣ କରେ ସେ ଛାୟୋପଜୀବୀ; ଅନ୍ୟର ପଦ ବା ପାଦ ରଚନାକୁ ଅନୁକରଣ କରେ ପଦକ ବା ପାଦୋପଜୀବୀ, ସମଗ୍ର କାବ୍ୟକୁ ଅନୁସରଣ କରେ ସକଳୋପଜୀବୀ ଏବଂ ଯେଉଁମାନେ ବ୍ୟାସ—ବାଲ୍ମୀକି ପ୍ରଭୃତି ଭୁବନ-ବନ୍ଦିତ ଅନୁକରଣୀୟ ଆଦର୍ଶ କବିମାନଙ୍କୁ ଅନୁକରଣ କରିଥାନ୍ତି ସେମାନେ ଭୁବନୋପଜୀବୀ । ବସ୍ତୁତଃ ସମସ୍ତ ଉଚ୍ଚକୋଟୀର କବି ମାନଙ୍କୁ ଭୁବନୋପଜୀବୀ କୁହାଯାଇ ପାରେ ।

ଷୋଡ଼ଶ ଶତାବ୍ଦୀର ଏଲିଜାବେଥୀୟ ଇଂରାଜୀ ସାହିତ୍ୟରେ ଏ ପ୍ରକାର ସର୍ଜନାତ୍ମକ ସମୀକ୍ଷାର ବହୁଳ ରଚନା ହୋଇଥିଲା । George Gascoi-gneଙ୍କ "Certayne Notes of Instruction concerning the making of Verse or Ryme in English" ଏବଂ George Puttenhamଙ୍କ "Arts of English Poesie ନାମକ ଗ୍ରନ୍ଥ ଦୁଇଟି ଏହାର ପ୍ରକୃଷ୍ଟ ଉଦାହରଣ । କିନ୍ତୁ ସଂସ୍କୃତ ସାହିତ୍ୟର କବିଶିକ୍ଷା ଶ୍ରେଣୀର ରଚନାରେ ଯେଉଁ ଆଭିମୁଖ୍ୟର ଗୁରୁତ୍ୱ ଉପଲବ୍ଧ ହୁଏ

ତାହା ଏ ପ୍ରକାରର ଇଂରାଜୀ ରଚନାରେ ମିଳେନା । ସମ୍ଭବତ ସମୀକ୍ଷକମାନେ କବିଙ୍କର ବ୍ୟକ୍ତିଗତ ପ୍ରତିଭା ସହିତ ଯେଉଁ ପ୍ରଶିକ୍ଷଣର ନିର୍ଦ୍ଦେଶ ଦେଇଛନ୍ତି ତାର ଆବଶ୍ୟକତା ସାର୍ବଜନୀନ । ବସ୍ତୁତଃ ସେସବୁ କବିଙ୍କର ବ୍ୟକ୍ତିତ୍ୱ ଗଠନ ପାଇଁ ହିଁ ଉଦ୍ଦିଷ୍ଟ । ଏବଂ ବ୍ୟକ୍ତିତ୍ୱ ବିହୀନ କବିତ୍ୱର ଅସାରତା ସମ୍ପର୍କରେ କିଛି କହିବା ଅତ୍ୟୁକ୍ତି ମାତ୍ର । କିନ୍ତୁ ଷୋଡ଼ଶ ଶତାବ୍ଦୀର ଇଂରେଜ ପ୍ରଶିକ୍ଷଣ ସମୀକ୍ଷକ କାବ୍ୟ ରଚନାକୁ ଏକ ସାମୟିକ 'ଆନନ୍ଦଦାୟକ 'ଖେଳ' ଭାବରେ ଗ୍ରହଣ କରିଛି । Puttenhamଙ୍କ ଗ୍ରନ୍ଥର ଉଦ୍ଦେଶ୍ୟ ସାମୟିକଭାବେ ଆନନ୍ଦଦାୟକ । ସଂଗୀତ ରଚନା କରିବା ସଂପର୍କରେ ତରୁଣୀମାନଙ୍କୁ ତଥା ଅଳସୁଆ ରାଜ ପାରିଷଦ ବର୍ଗଙ୍କୁ ଶିକ୍ଷା ଦେବା ।

ସିଧା ସଳଖ ବା ପ୍ରତ୍ୟକ୍ଷ ପ୍ରଶିକ୍ଷଣୀ ସମୀକ୍ଷା ବ୍ୟତୀତ ପାଶ୍ଚାତ୍ୟ ପରମ୍ପରାରେ ଆଉ ଗୋଟିଏ ପରୋକ୍ଷ ସମୀକ୍ଷାର ସନ୍ଧାନ ମିଳେ । ତାହା ହେଲା କୌଣସି ଗ୍ରନ୍ଥ ବା ଗ୍ରନ୍ଥ ସମୂହର ଅଧ୍ୟୟନ ମାଧ୍ୟମରେ ଦୋଷ ତ୍ରୁଟିର ପର୍ଯ୍ୟାଲୋଚନା କରି ପରୋକ୍ଷ ଭାବରେ ଉଚ୍ଚକୋଟୀର ରଚନା ସମ୍ପର୍କରେ ପଥ ପ୍ରଦର୍ଶନ କରାଇବା । ଏ ଧରଣର ସମୀକ୍ଷା ଆରମ୍ଭ ହୋଇଥିଲା ଅଷ୍ଟାଦଶ ଶତାବ୍ଦୀର ଇଂରାଜୀ ସାହିତ୍ୟରେ । Donald Davie ତାଙ୍କର Purity of Diction in English Verse"ରେ କହିଛନ୍ତି— "ମୋର ଏହି ସବୁ ବକ୍ତବ୍ୟ ଉଦ୍ଧୃତ୍ୟମାନ କବିଙ୍କ ପାଇଁ ଉଦ୍ଦିଷ୍ଟ ।" କିନ୍ତୁ ଏହି ପରୋକ୍ଷ ପ୍ରଶିକ୍ଷଣୀ ସମୀକ୍ଷାର ଉତ୍କର୍ଷ ଘଟିଛି ବିଂଶ ଶତାବ୍ଦୀର କେତେକ ପ୍ରଭାବଶାଳୀ ସମୀକ୍ଷକଙ୍କ ରଚନାରେ । T. S, Eliotଙ୍କ କାରଖାନା ସମୀକ୍ଷା ଏହି ଶ୍ରେଣୀର । ସେ 'Frontiers of Criticism' ନାମକ ପ୍ରବନ୍ଧରେ ସାହିତ୍ୟକ ସମୀକ୍ଷାର ଏକ ସାର୍ବଜନୀନ ବୃତ୍ତି ସମ୍ପର୍କରେ ଉପସଂହାର ଦେବା ପୂର୍ବରୁ ପ୍ରଚଳିତ ସମୀକ୍ଷା ପଦ୍ଧତି ଗୁଡ଼ିକର ଦୋଷ ତ୍ରୁଟି ଦେଖାଇ ସେଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଏବଂ ସେହି ପ୍ରସଙ୍ଗରେ ସମକାଳୀନ ସମୀକ୍ଷାକୁ କେତୋଟି ଶ୍ରେଣୀରେ ବିଭକ୍ତ କରିଛନ୍ତି । ଯଥା— କାରଖାନା ସମୀକ୍ଷା (Workshop Criticism), ଉତ୍ସ-ସନ୍ଧାନ ସମୀକ୍ଷା (Criticism of Explanation by Origins) ଏବଂ

ଲେମ୍ବୁଚିପୁଡ଼ା ସମୀକ୍ଷା ( Lemon Squeezer School of Criticism) । ଏଥିରୁ ପ୍ରଥମ ଶ୍ରେଣୀର ସମୀକ୍ଷକ ମଧ୍ୟରେ Eliot ନିଜକୁ ଏବଂ Ezra Poundଙ୍କୁ ଗଣ୍ୟ କରି କହିଛନ୍ତି ଯେ ମୁଖ୍ୟତଃ ସେ ଦୁହେଁ କବି ଏବଂ ଗୌଣତଃ ସମୀକ୍ଷକ । ଯେଉଁ କବିମାନଙ୍କ ପ୍ରତି ସେମାନଙ୍କର ବ୍ୟକ୍ତିଗତ ଅନୁରାଗ ରହିଛି ଓ ଯେଉଁ କବିମାନେ ସେମାନଙ୍କୁ କାବ୍ୟ ରଚନାରେ ପ୍ରଭାବିତ କରିଛନ୍ତି କେବଳ ସେହି କବିମାନଙ୍କର ହିଁ ସେମାନେ ସମୀକ୍ଷା କରିଛନ୍ତି । ଅନ୍ୟ ଭାଷାରେ କହିଲେ, ସେମାନଙ୍କର କବି ଜୀବନର ପଥପ୍ରଦର୍ଶକ ବା guide ମାନଙ୍କୁ ହିଁ ସେମାନେ ସମୀକ୍ଷା କରିଛନ୍ତି । ଅତଏବ ସେମାନେ ସେମାନଙ୍କ ପାଇଁ ଆଦର୍ଶ ଏବଂ ସେମାନଙ୍କୁ ପ୍ରଶଂସା କରିବା ଛଳରେ ମୁବକବି, ଅନାଗତ ବା ଭବିଷ୍ୟମାନ କବିମାନଙ୍କ ସମକ୍ଷରେ ସେମାନଙ୍କୁ ଅନୁକରଣୀୟ ଭାବେ ପ୍ରତିଷ୍ଠିତ କରିଛନ୍ତି । କବିତା କାରଖାନାରୁ ଏ ସମୀକ୍ଷାର ଉଦ୍ଭବ ହେତୁ ଏହାର ନାମ କାରଖାନା-ସମୀକ୍ଷା ।

ଯୁକ୍ତି ହୋଇ ପାରେ, ପ୍ରତ୍ୟେକ ସମୀକ୍ଷାର ଉଦ୍ଦେଶ୍ୟ ମୂଲ୍ୟାୟନ ଏବଂ ପ୍ରତ୍ୟେକ ସମୀକ୍ଷକ ତା,ର ନିଜସ୍ୱ ରୁଚି ଅନୁଯାୟୀ, ଯାହାକୁ ଅଧିକ ମୂଲ୍ୟବାନ ମନେକରେ ତା' ପ୍ରତି ଅନୁରକ୍ତ ହେବା ସ୍ୱାଭାବିକ ଏବଂ ଯୁକ୍ତି ଯୁକ୍ତ । ଏଣୁ ଏଠାରେ ପକ୍ଷପାତ ଦୋଷ ରହିଲା କେଉଁଠି ? ବସ୍ତୁତଃ ସେଭଳି ମୂଲ୍ୟବାନ୍ କବିତ୍ୱ ସମସ୍ତଙ୍କର ଆଦର୍ଶ । କିନ୍ତୁ ଉତ୍ତରରେ କୁହାଯାଇ ପାରେ, ପ୍ରଥମେ ଭଲପାଇ ତା'ପରେ ଗୁଣର ସନ୍ଧାନ କରିବା ଏବଂ ପ୍ରଥମେ ଗୁଣର ସନ୍ଧାନ କରି ତା' ପରେ ଭଲ ପାଇବା—ଏ ଦୁଇଟି ସମ୍ପୂର୍ଣ୍ଣ ପୃଥକ ବ୍ୟବହାର । ପ୍ରଥମ ବ୍ୟବହାରଟି କାରଖାନା ସମୀକ୍ଷକଙ୍କର ଏବଂ ଏଥିରେ ବୈୟକ୍ତିକତା ଏବଂ ପକ୍ଷପାତର ସମ୍ଭାବନା ସର୍ବାଧିକ । ଦ୍ୱିତୀୟ ବ୍ୟବହାରଟି ନିରପେକ୍ଷ ସମୀକ୍ଷକଙ୍କର । ଉଦାହରଣତଃ ଏଲିଅଟ, ଦାନ୍ତେ, ସେକସ୍‌ପିୟର, ଓ ମିଲ୍‌ଟନ ପ୍ରଭୃତି ଭୁବନ ବିଶ୍ରୁତ କବିମାନଙ୍କର ଦୋଷତ୍ରୁଟି ଦେଖାଇଛନ୍ତି, ଅଥଚ ସପ୍ତଦଶ ଶତକର ଡନ୍, ହାର୍ବଟ ଏବଂ ମାର୍ଭେଲ୍ ପ୍ରଭୃତି କ୍ୱଚିତ ନାମଧେୟ କବିମାନଙ୍କର ଭୂୟସୀ ପ୍ରଶଂସା କରି ସେମାନଙ୍କୁ ଆଦର୍ଶ ସ୍ଥାନାଭିଷିକ୍ତ କରିଛନ୍ତି । ସେଥିପାଇଁ ଅବଶ୍ୟ ସେ ଯୁକ୍ତିତର୍କର ଅଭେଦ୍ୟ ଶବ୍ଦାବଳୀ

ଏବଂ ବ୍ୟଙ୍ଗାତ୍ମକ ରଚନା କରିଛନ୍ତି । କିନ୍ତୁ ସେଗୁଡ଼ିକ ବର୍ତ୍ତମାନର ସହୃଦୟ ପାଠକମାନଙ୍କ ଦ୍ୱାରା କ୍ରମଶଃ ନୀରସ ଏବଂ ଅନାଦୃତ ପ୍ରମାଣିତ ହୋଇଛି । କଥା ହେଉଛି, ସେହି କବିଗୁଡ଼ିକ ଏଲିଅଟଙ୍କ ପାଇଁ ଆଦର୍ଶ ହୋଇପାରନ୍ତି ଅଥବା ସେମାନଙ୍କ ଅନୁକରଣ କରି ଏଲିଏଟ ନିଜେ ଅତି ଉଚ୍ଚକୋଟୀର କବିତା ଲେଖିପାରିଥାନ୍ତି; କିନ୍ତୁ ସେହି କବିମାନଙ୍କୁ ଧ୍ୟେୟ କରି ତାଙ୍କର ସମୀକ୍ଷା ସିଦ୍ଧାନ୍ତ ଦେଶକାଳ ସୀମିତ ।

ପାଶ୍ଚାତ୍ୟ ପରଂପରାରେ ସର୍ଜନାତ୍ମକ ସମୀକ୍ଷାର ଆଉ ଗୋଟିଏ ଦିଗ ଲକ୍ଷ୍ୟ କରାଯାଇପାରେ । ତାହା ହେଲା ଯେଉଁ ସମୀକ୍ଷାରେ କବିତ୍ୱ ବା କାବ୍ୟ ଧର୍ମିତା ରହିଛି, ଅର୍ଥାତ ଯାହାକୁ ପଢ଼ିଲେ ଆଲୋଚନା ଭଳି ନ ଲାଗି ଆଉ ଗୋଟିଏ କାବ୍ୟ ପଢ଼ିବା ଭଳି ଲାଗେ, ଊନବିଂଶ ଶତକର ରୋମାଣ୍ଟିକ୍ ପ୍ରାବନ୍ଧିକମାନଙ୍କର ରଚନା ଏହି ଶ୍ରେଣୀର । ଜର୍ମାନୀରେ Winckelmann, Herder, Janpaul, ଫ୍ରାନସର Chateaubriant ଏବଂ ଇଂଲଣ୍ଡର Hazlitt ଏବଂ Lamb ତଥା ପରବର୍ତ୍ତୀ ଭିକ୍ଟୋରିଆ ଯୁଗର Carlyle ଏବଂ Pater ପ୍ରଭୃତିଙ୍କୁ ଏ ପ୍ରକାର ସର୍ଜନାତ୍ମକ ସମାଲୋଚକ କୁହାଯାଇପାରେ । ସମୀକ୍ଷକ A. C. Bradly ଲ୍ୟାମ୍ବଙ୍କୁ ଊନବିଂଶ ଶତକର ଶ୍ରେଷ୍ଠ ସମୀକ୍ଷକ ବୋଲି କହିଛନ୍ତି । E. M. Tillyard Coleridge ଙ୍କୁ ଇଂଲଣ୍ଡର ଶ୍ରେଷ୍ଠ ସୈଦ୍ଧାନ୍ତିକ ସମୀକ୍ଷକ ତଥା ଲ୍ୟାମ୍ବଙ୍କୁ ଗୋଟିଏ ଦୃଷ୍ଟିରୁ ଶ୍ରେଷ୍ଠ ପ୍ରାୟୋଗିକ ବା ଅନୁଶୀଳନ-ସମୀକ୍ଷକ ମଧ୍ୟ କହିଛନ୍ତି । ଲ୍ୟାମ୍ବ ଇଂରାଜୀ ସାହିତ୍ୟର ଶ୍ରେଷ୍ଠ ଅନୁଶୀଳନ ସମୀକ୍ଷକ ନ ହେଲେ ମଧ୍ୟ ଯେ ପ୍ରକାର ସମୀକ୍ଷାର ଏକ ପୁରୋଧା । ଏହି ଅନୁଶୀଳନ ସମୀକ୍ଷାର ଆରମ୍ଭ କୋଲେରିଜ୍ଙ୍କ ଠାରୁ । କିନ୍ତୁ ସେ ଥିଲେ ମୁଖ୍ୟତଃ ଏକ ସୈଦ୍ଧାନ୍ତିକ ସମୀକ୍ଷକ । ଏବଂ ତାଙ୍କର ସିଦ୍ଧାନ୍ତ ତୁଳନାରେ ଅନୁଶୀଳନର ପରିମାଣ ବା ପ୍ରାଧାନ୍ୟ ଖୁବ୍ କମ୍ । ଅପର ପକ୍ଷରେ ଲ୍ୟାମ୍ବ କେବଳ ଅନୁଶୀଳନ ସମୀକ୍ଷା ହିଁ ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରେ 'Specimens of English Dramatic Poets' ନାମକ ଗ୍ରନ୍ଥ ଏବଂ 'On the Tragedies of Shakespeare considered with Reference to

their Fitness for Stage Representation' ଇତ୍ୟାଦି ପ୍ରବନ୍ଧ Wordsworthଙ୍କ 'Excursion', Keatsଙ୍କ Lamia', Eve of 'Saint Agnes' ପ୍ରଭୃତି କବିତାର ସମୀକ୍ଷା ପ୍ରସିଦ୍ଧ ।

ଏ ପ୍ରକାର ସର୍ଜନାତ୍ମକ ସମୀକ୍ଷାରେ ତିନୋଟି ଗୁଣ ଲକ୍ଷ୍ୟ କରାଯାଇ ପାରେ । ଭାବାନୁସ୍ମରଣ (evocation), ଆଲଙ୍କାରିକ ପ୍ରକାଶଭଙ୍ଗୀ (Figurative language) ଏବଂ ବ୍ୟକ୍ତିଗତ ପ୍ରସଙ୍ଗ ଉପସ୍ଥାପନ personal reference) କରି ସମୀକ୍ଷକ ନିଜର ଅନୁଭୂତିକୁ ପାଠକର ହୃଦୟରେ ଜଗାଇବାକୁ ଚାହେଁ । "Don't you already feel your spirit filled with the scenes ?—The banks of river—the cowslip beds—the pastural scenes — the neat ale houses—and hosteses and milk maids" (Lamb) ଆଲଙ୍କାରିକ ଭାଷାର ପ୍ରୟୋଗ ଏହି ସମୀକ୍ଷାକୁ କାବ୍ୟରୂପ ଦେଇଥାଏ ଏବଂ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ ଦ୍ୱାରା କାବ୍ୟର ଆନ୍ତରିକତା ବା intimacy ଏବଂ ସଘନତା ବା intencity ଆଦି ଗୁଣ ପ୍ରତିଷ୍ଠିତ ହୋଇଥାଏ । ଅନେକାଂଶରେ Pater ପ୍ରଭୃତିଙ୍କ ଆତ୍ମଧର୍ମୀ ସମୀକ୍ଷାରେ ଏସବୁ ଗୁଣ ଲକ୍ଷିତ ହୋଇଥାଏ । Eliot ସମୀକ୍ଷା ରଚନାରେ ଏସବୁ ଗୁଣକୁ ବର୍ଜନ କରିବାକୁ ଉପଦେଶ ଦେଇଛନ୍ତି । କାରଣ ଏହା ସମୀକ୍ଷା ପାଇଁ ଆବଶ୍ୟକ ନୈର୍ବ୍ୟକ୍ତିକତାର ପରମ ବାଧକ ।

(୪) ପୂର୍ବ ଅନୁଚ୍ଛେଦଗୁଡ଼ିକରେ ଭାରତୀୟ ଓ ପାଶ୍ଚାତ୍ୟ ଆଚାର୍ଯ୍ୟମାନଙ୍କୁ ଅନୁସରଣ କରି ସମୀକ୍ଷାର ଅର୍ଥ, ଧର୍ମ ଏବଂ ପ୍ରକାରଭେଦର ସୂଚନା ଦେଇ ସର୍ଜନାତ୍ମକ ସମୀକ୍ଷାର କେତୋଟି ଦିଗ ସମ୍ପର୍କରେ ଆଲୋକପାତ କରାଗଲା । ବର୍ତ୍ତମାନ ଏହି ବିବରଣର କେତୋଟି ଗୁରୁତ୍ୱପୂର୍ଣ୍ଣ ବିଶ୍ଳେଷଣ କରାଯାଉ ।

ପ୍ରଥମତଃ, ଉପସ୍ଥିତ ପ୍ରବନ୍ଧର ଶୀର୍ଷକ ପାଶ୍ଚାତ୍ୟ ପରିଭାଷାଭିତ୍ତିକ । ଭାରତୀୟ ସାହିତ୍ୟ ଆଲୋଚନାରେ ସର୍ଜନାତ୍ମକ ସମୀକ୍ଷାବୋଲି କୌଣସି ପରିଭାଷା ନାହିଁ । କାରଣ, ଯାହା ପ୍ରଥମ ଅନୁଚ୍ଛେଦରେ ଦେଖାଯାଇଛି,

ଭାରତୀୟମାନଙ୍କ ମତରେ ସମୀକ୍ଷାମାନେ ସର୍ଜନାତ୍ମକ । କାବ୍ୟ ଯେପରି ଏକ ସୃଷ୍ଟି ତାର ସମୀକ୍ଷା ମଧ୍ୟ ସେହିପରି ଏକ ସୃଷ୍ଟି । କବି ଏବଂ ସମୀକ୍ଷକ ବା ଆଲୋଚକ ଉଭୟେ ପ୍ରତିଭାବାନ ସ୍ରଷ୍ଟା । କେବଳ ଯାହା ବାହ୍ୟ ଭେଦରେ ଦୁହେଁ ଭିନ୍ନ । କବିର ସୃଜନ ହେଉଛି ଉତ୍ପାଦନ ଏବଂ ସମୀକ୍ଷାରେ ସୃଜନତାର ପରୀକ୍ଷା । ପୁନଶ୍ଚ ପାଶ୍ଚାତ୍ୟ ପରିଭାଷାରେ ସମୀକ୍ଷାର ଯେଉଁ ଗୁଣପ୍ରକାର କ୍ରିୟା-ତ୍ମକ ଭେଦ ରହିଛି ଭାରତୀୟ ପରିଭାଷାରେ ତାହା ନାହିଁ । ଭାରତୀୟମାନେ ମୁଖ୍ୟତଃ ଦୁଇ ପ୍ରକାର ସମୀକ୍ଷାର ରଚନା କରିଛନ୍ତି, ସୈଦ୍ଧାନ୍ତିକୀ ଓ ପ୍ରାୟୋଗିକୀ ବା ଅନୁଶୀଳନୀ । ଯଦିଓ ଏହି ଦ୍ୱିତୀୟ ଶ୍ରେଣୀର ସମୀକ୍ଷା ପାଇଁ ସେମାନେ କୌଣସି ବିଶିଷ୍ଟ ପରିଭାଷା ବ୍ୟବହାର କରିନାହାନ୍ତି ସେମାନଙ୍କ କାର୍ଯ୍ୟରୁ ହିଁ ତାହା ପ୍ରମାଣିତ ହୋଇଥାଏ । ପାଶ୍ଚାତ୍ୟ ସାହିତ୍ୟରେ Practical Criticism ପରିଭାଷାର ସୃଷ୍ଟି ୧୯୨୦ ମସିହାରେ ଅଧ୍ୟାପକ I. A. Richards ଙ୍କ ଦ୍ୱାରା । ଏହାର ଅର୍ଥ କୌଣସି ଏକ ବିଶିଷ୍ଟ କବିଙ୍କର ବିଶିଷ୍ଟ ରଚନା ଅଥବା ରଚନାବଳୀର ନିବିଡ଼ ଅଧ୍ୟୟନପୂର୍ବକ ତାହାର ମୁଖ୍ୟ ଗୁଣାବଳୀର ସନ୍ଧାନ ଏବଂ ଯଥୋପଯୁକ୍ତ ବିଶଦ ଉଦାହରଣ ସହ ସେଗୁଡ଼ିକର ପ୍ରତିପାଦନ । ଠିକ୍ ଏହି ଅର୍ଥରେ ଅବଶ୍ୟ ଭାରତୀୟ ପରମ୍ପରାରେ କୌଣସି ସମୀକ୍ଷା ଗ୍ରନ୍ଥ ରଚିତ ହୋଇ ନାହିଁ । "କାଳିଦାସଙ୍କ ଉପମା ବିଳାସ" ଅଥବା "ଶ୍ରୀହର୍ଷଙ୍କ ପଦଲାଳିତ୍ୟ" ଶିରୋନାମାରେ କୌଣସି ପ୍ରାଚୀନ ସମୀକ୍ଷକ କୌଣସି ଗ୍ରନ୍ଥ ଲେଖି ନାହାନ୍ତି ସତ୍ୟ, କିନ୍ତୁ କେଉଁ କବିଙ୍କ ରଚନାରେ କେଉଁ ଗୁଣ ମୁଖ୍ୟ ବା essential ସେମାନେ ତାହା ବେଶ ତ ସୂର୍ଯ୍ୟପୂର୍ଣ୍ଣ ଭାବେ ଅନୁଭବ କରିପାରିଥିଲେ । ଏବଂ ସେହି ସେହି କବିଙ୍କ କାବ୍ୟକୃତି ଉପରେ ରଚନା କରିଥିବା ଅସଂଖ୍ୟ ଟୀକା-ସମୀକ୍ଷାରେ ତାହା ସପ୍ରମାଣ ପ୍ରତିପାଦିତ କରିଥିଲେ । ବସ୍ତୁତଃ, ସଂସ୍କୃତ ସାହିତ୍ୟର ଏହି ଟୀକାଗୁଡ଼ିକ ହିଁ ପ୍ରାକ୍ଟିକାଲ୍ କ୍ରିଟିସିଜିମ୍ ବା ଅନୁଶୀଳନୀ ସମୀକ୍ଷା । ଆଚାର୍ଯ୍ୟମାନଙ୍କ ଦ୍ୱାରା ପ୍ରତିଷ୍ଠିତ ରସ, ଗୁଣ, ଅଳଂକାର ଓ ରୀତି ଆଦି ସମ୍ପର୍କିତ ସିଦ୍ଧାନ୍ତ ଗୁଡ଼ିକର ପ୍ରୟୋଗ ଏହି ଟୀକାଗୁଡ଼ିକରେ ହୋଇଥିବାରୁ ଏହିସବୁ ପ୍ରାୟୋଗିକ ସମୀକ୍ଷା ବା applied Criticism

ମଧ୍ୟ କୁହାଯାଇ ପାରେ । ଏବଂ ଭାରତୀୟମାନଙ୍କ ମତରେ ଏହି ଉଭୟ ପ୍ରକାର ( ସୈଦ୍ଧାନ୍ତିକ ଏବଂ ଅନୁଶୀଳନୀ ବା ପ୍ରାୟୋଗିକୀ ) ସମୀକ୍ଷା ସର୍ଜନାତ୍ମକ ।

ସୈଦ୍ଧାନ୍ତିକ ବିଭିନ୍ନ କାବ୍ୟ ଅନୁଶୀଳନ କରି ସେଗୁଡ଼ିକରେ ଥିବା ଉତ୍କର୍ଷର ମୂଳାବଲମ୍ବନରେ ସାର୍ବଜନୀନ ସିଦ୍ଧାନ୍ତ ପ୍ରସ୍ତୁତ କରେ । ପୁଣି ଅନୁଶୀଳକ ସେହି ସିଦ୍ଧାନ୍ତଗୁଡ଼ିକର ସହାୟତାରେ ଅଧିକାଧିକ କାବ୍ୟ ଅଧ୍ୟୟନ କରେ । ଏ ଦୃଷ୍ଟିରୁ ସୈଦ୍ଧାନ୍ତିକ ଜଣେ ଅନୁଶୀଳକ । ତାଙ୍କ ସିଦ୍ଧାନ୍ତର ଯୁକ୍ତିଗୁଡ଼ିକୁ ସେ ବିଭିନ୍ନ କାବ୍ୟରୁ ଉଦାହରଣ ଦେଇ ପ୍ରତିଷ୍ଠିତ କରାଇଥାନ୍ତି । ଅପରପକ୍ଷରେ ସିଦ୍ଧାନ୍ତ ଅନଭିଜ୍ଞ ବ୍ୟକ୍ତି ଅନୁଶୀଳନ କରିବାରେ ସମର୍ଥ ହୋଇ ପାରିବ ନାହିଁ । କୌଣସି ନା କୌଣସି ସିଦ୍ଧାନ୍ତର ପରୋକ୍ଷ ବା ପ୍ରତ୍ୟକ୍ଷ ଅବଲମ୍ବନ ତା ପାଇଁ ଅପରିହାର୍ଯ୍ୟ ।

ପାଶ୍ଚାତ୍ୟ ଆଚାର୍ଯ୍ୟମାନଙ୍କ ପରି ଭାରତୀୟ ଆଚାର୍ଯ୍ୟମାନେ ପ୍ରଶିକ୍ଷଣ ଅର୍ଥରେ ସର୍ଜନାତ୍ମକ ସମୀକ୍ଷାର କୌଣସି ବିଶିଷ୍ଟ ଭେଦ କରି ନାହାନ୍ତି । ତଥାପି କବି ଶିକ୍ଷା ପ୍ରସଙ୍ଗଗୁଡ଼ିକୁ ଉପସ୍ଥିତ ପ୍ରବନ୍ଧରେ ଏହି ଦୃଷ୍ଟିରୁ ଆଲୋଚନା କରାଯାଇଛି । ସେଗୁଡ଼ିକ ବସ୍ତୁତଃ ସୈଦ୍ଧାନ୍ତିକ ସମୀକ୍ଷାର ଅନ୍ତର୍ଭୁକ୍ତ । ପାଶ୍ଚାତ୍ୟ ସମୀକ୍ଷାର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରଶିକ୍ଷଣ ଉଭୟ ଭାରତୀୟ ସମୀକ୍ଷାର ସୈଦ୍ଧାନ୍ତିକ ଶ୍ରେଣୀର ଅନ୍ତର୍ଭୁକ୍ତ । ଏବଂ ଟୀକା ସମୀକ୍ଷାରେ କେବଳ ପରୋକ୍ଷ ପ୍ରଶିକ୍ଷଣର ସଂଯୋଜନା ରହିଥାଏ । ପାଶ୍ଚାତ୍ୟ ଜଗତର ସର୍ବଶ୍ରେଷ୍ଠ ପ୍ରାଚୀନତମ କ୍ଲାସିକାଲ ସୈଦ୍ଧାନ୍ତିକ ଆରିଷ୍ଟୋଟଲଙ୍କ ଗ୍ରନ୍ଥ 'poetics'ରେ ଏହି ପ୍ରତ୍ୟକ୍ଷ ଏବଂ ପରୋକ୍ଷ—ଉଭୟ ଧରଣର ପ୍ରଶିକ୍ଷଣ ସଂଯୋଜିତ ହୋଇଛି ।

ରୋମାଣ୍ଟିକ୍ ଧର୍ମୀ ବା ଆତ୍ମଧର୍ମୀ ସମୀକ୍ଷାରେ ଯେଉଁ ଧରଣର ସର୍ଜନାତ୍ମକତା ଦେଖାଯାଏ ଭାରତୀୟ ଆଚାର୍ଯ୍ୟମାନଙ୍କ ମତରେ ତାହା ହୋଇଥାନ୍ତା କାରକ-କବି ଓ ଭାବକ-କବିଙ୍କ ବୃତ୍ତିଗତ ଭ୍ରାନ୍ତି । କାରକ-କବିଙ୍କର ବୃତ୍ତି ହେଲା କାବ୍ୟ ସୃଷ୍ଟି କରିବା ଏବଂ ଭାବକ-କବି ଏହି ସୃଷ୍ଟିର

ପରୀକ୍ଷା କରିବାକୁ ଯାଇ ଅନ୍ୟ ଏକ କାବ୍ୟ ସୃଷ୍ଟିର ତୁଳନା କରିବ କାହିଁକି ? ଅବଶ୍ୟ ଭରତଙ୍କଠାରୁ ବିଶ୍ୱନାଥ କବିରାଜ ତଥା ପଣ୍ଡିତରାଜ ଜଗନ୍ନାଥଙ୍କ ପର୍ଯ୍ୟନ୍ତ ବହୁ ନୈୟାନ୍ତ୍ରିକ ପଦ୍ୟବୃନ୍ଦରେ ଗ୍ରନ୍ଥ ରଚନା କରିଛନ୍ତି । କଦାଚ କ୍ୱଚିତ୍ କେତେକ ସାଧାରଣ ଅଳଙ୍କାର ସେମାନେ ବ୍ୟବହାର କରିଥିଲେ ମଧ୍ୟ ସେମାନଙ୍କର ଭାଷା କସ୍ମିନ୍‌କାଳେ ଆଳଙ୍କାରିକ ନୁହେଁ । ଏହାଛଡ଼ା ଭାବାନୁସ୍ଫୁରଣ ଏବଂ ବୈଯକ୍ତିକ ପ୍ରସଙ୍ଗାଦିଗୁଣର ସନ୍ନିବେଶ ସେମାନଙ୍କ ପରୀକ୍ଷାରେ କଦାପି ପରିଲକ୍ଷିତ ହୁଏନା ।

**ଡକ୍‌ଟର ଅନନ୍ତଚରଣ ଶୁକ୍ଳ**

# ସହାୟକ ଗ୍ରନ୍ଥସୂଚୀ


1. S. N. Dasgupta—**History of Indian Philosophy** Vol I (Paper back) Delhi, 1975

2. S. K. Dey—**History of Sanskrit Poetics,** Calcutta, 1960

୩। ରାଜଶେଖର— 'କାବ୍ୟ ମୀମାଂସା'—ପାଟଣା, ୧୯୫୪

୪। ଆନନ୍ଦ ବର୍ଦ୍ଧନ —(ଅଭିନବ ଗୁପ୍ତଙ୍କ ଲୋଚନଟୀକା ସହ) ଧ୍ୱନ୍ୟାଲୋକ, କଲିକତା, ୧୯୫୦

୫। ଈଶ୍ୱର କୃଷ୍ଣ— 'ସାଂଖ୍ୟକାରିକା' ଚୌଖମ୍ବା —୧୯୫୪

6. **Princeton Encyclopedia of Poetry and Poetics**— Newyork, London—1975

7 Rene Wellek—**History of Modern Criticism in Antiquity**—Vol II, London, 1965

8. J.W.H. Atkins—**Literary Criticism in Antiquity** —Vol II, London, 1934

9. T. S. Eliot—"**Frontiers of Criticism**" **in Twentieth Century Critical Essays**—2nd Series, London, 1958




ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା, କୌଣସି ଗୋଷ୍ଠୀ ବା ନିର୍ଦ୍ଦିଷ୍ଟ ଶିବିରଭୁକ୍ତ ନୁହେଁ । ପ୍ରାଚ୍ୟ ପରଂପରାର ରସବାଦୀ, ରୀତିବାଦୀ, ଧ୍ୱନିବାଦ କିମ୍ବା ପାଶ୍ଚାତ୍ୟ ପରଂପରାର ଶୈଳୀଭିତ୍ତିକ (Stylistic Criticism), ଗଠନାତ୍ମକ (Structural Criticism), ତୁଳନାତ୍ମକ (Comparative Criticism ) କିମ୍ବା ଐତିହାସିକ ( Historical Criticism) ଅଥବା ନୂତନ ସମାଲୋଚନା ( New Criticism ) ଭଳି କୌଣସି ଏକ ପୂର୍ବନିର୍ଦ୍ଦିଷ୍ଟ, ଏକକ ସାହିତ୍ୟ ସମୀକ୍ଷା ପଦ୍ଧତି ସହ, ଏହା ସଂପୃକ୍ତ ନୁହେଁ । ଯୁଗୀୟ ଆବଶ୍ୟକତା ଆହ୍ୱାନରେ, ସମୀକ୍ଷା ଶିବିରଭୁକ୍ତ ପ୍ରତ୍ୟେକ ପଦ୍ଧତି ଦିନେ ନା ଦିନେ ପୁରୁଣା ହୁଏ, ଅଚଳ ହୋଇଯାଏ । କାରଣ ରସ, ରୀତି, ଧ୍ୱନି କିମ୍ବା ଶୈଳୀଭିତ୍ତିକ, ଗଠନାତ୍ମକ, ଐତିହାସିକ ପ୍ରଭୃତି ପଦ୍ଧତି, ସାହିତ୍ୟର ସାମଗ୍ରିକ ଉପଲବ୍ଧି ପାଇଁ ଏକ ଏକ ଉପାୟ ମାତ୍ର; କିନ୍ତୁ ଏହାର ଅନ୍ତିମ ଲକ୍ଷ୍ୟ ନୁହେଁ; ଉଦ୍ଦେଶ୍ୟ ବା ଧ୍ୟେୟ ନୁହେଁ । ସର୍ଜନାତ୍ମକ ସାହିତ୍ୟ ସମୀକ୍ଷାର ଧ୍ୟେୟ, ସାମଗ୍ରିକ ମୂଲ୍ୟାୟନ ସାହାଯ୍ୟରେ ରସୋତ୍ତୀର୍ଣ୍ଣ ଉପଲବ୍ଧି । ଏଥିପାଇଁ ଆବଶ୍ୟକତାନୁଯାୟୀ ବିଭିନ୍ନ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ବିଶ୍ଳେଷଣ ପଦ୍ଧତିର ସାହାଯ୍ୟ ନିଆଯାଇପାରେ ।

ଓଡ଼ିଆ ସାହିତ୍ୟର ଯେଉଁ ରଚନାଗୁଡ଼ିକ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା ପର୍ଯ୍ୟାୟଭୁକ୍ତ ଭଳି ମନେ ହୁଏ, ସେଗୁଡ଼ିକୁ ହିଁ ଏଠାରେ ଆଲୋଚନାର ପରିସରଭୁକ୍ତ କରାଯାଉଛି । ପୁଣି ଆଲୋଚନା ପରିସରଭୁକ୍ତ ସମୀକ୍ଷା ବ୍ୟତୀତ, ସମାନ୍ତରାଳ ସମୀକ୍ଷା ଓ ସମୀକ୍ଷକ ଯେ ନାହାନ୍ତି ତା ନୁହେଁ, କିନ୍ତୁ ପ୍ରବନ୍ଧର ସୀମିତ କଳେବର ମଧ୍ୟରେ ସମସ୍ତ ସର୍ଜନଶୀଳ ସାହିତ୍ୟ-ସମାଲୋଚନାକୁ ସ୍ଥାନ ଦିଆଯାଇ ପାରିନାହିଁ । ଉଦ୍ଦେଶ୍ୟମୂଳକ ଭାବେ ଏଭଳି କୌଣସି ସର୍ଜନଶୀଳ ସମୀକ୍ଷାକୁ ବାଦ ଦେବା ଏହି ପ୍ରାବନ୍ଧିକର ଅଭିପ୍ରାୟ ନୁହେଁ; ପକ୍ଷାନ୍ତରେ ସର୍ଜନାତ୍ମକ ସମୀକ୍ଷକମାନଙ୍କର ଏକ ନାମାବଳୀ-ତାଲିକା ଦେବା, ରୁଚିସମ୍ମତ ମନେ ହୁଏ ନାହିଁ । ସେଥିପାଇଁ ସଂକ୍ଷିପ୍ତ ନିବନ୍ଧରେ କେତେକ ପ୍ରତିନିଧିସ୍ଥାନୀୟ

ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା-କୃତିକୁ ନମୁନା ରୂପେ ଗ୍ରହଣ କରାଯାଇ ପରଂପରା ଓ ପୂର୍ବୋଦ୍ଦୃଷ୍ଟିରେ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା ମୂଲ୍ୟାୟିତ ହୋଇଛି ।

ଶଂସିତ ପ୍ରବନ୍ଧର ପରିସର ମଧ୍ୟରେ ଓଡ଼ିଆ ସମାଲୋଚନା ସାହିତ୍ୟର ବିବର୍ତ୍ତନ ଧାରାର କ୍ରମିକ ଇତିହାସ ସୂଚିତ ହୋଇ ନାହିଁ । କାରଣ, ସମସ୍ତ ସାହିତ୍ୟ-ସମାଲୋଚନା ସର୍ଜନାତ୍ମକ ସାହିତ୍ୟ ସମାଲୋଚନା ପର୍ଯ୍ୟାୟଭୁକ୍ତ ନୁହେଁ । ଓଡ଼ିଆ ସାହିତ୍ୟ ସମାଲୋଚନାର ଅସୂମାରମ୍ଭ, ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭ ବେଳକୁ ହୋଇଥିଲେ ମଧ୍ୟ, କେହି କେହି ସମାଲୋଚକ ୧୮୬୮ ଖ୍ରୀଷ୍ଟାବ୍ଦ, ଫେବୃୟାରୀ ୨ ତାରିଖ 'ଉତ୍କଳ ଦୀପିକା' ସଂସ୍କରଣରେ 'କସ୍ୟଚିତ୍ ବିଚାର-କସ୍ୟ' ଶୀର୍ଷକ ପ୍ରେରିତ ପତ୍ର ହିଁ ଓଡ଼ିଆ ସମାଲୋଚନାର ଆଦି ରୂପ ବୋଲି ଅଭିମତ ଦେଇଥାନ୍ତି । ଏହି ପତ୍ରଟି ବସ୍ତୁତଃ ବ୍ୟାସକବି ଫକୀରମୋହନ ସେନାପତିଙ୍କ ପ୍ରାଥମିକ ସାରସ୍ୱତ ସୃଷ୍ଟି ସଂପର୍କୀୟ ଏକ ଆଲୋଚନା । ଏହି ଆଲୋଚନା ପ୍ରସଙ୍ଗରେ ପୂର୍ବୋକ୍ତ ଆଲୋଚକ, ଓଡ଼ିଆ ଭାଷାତତ୍ତ୍ୱ ପରିପ୍ରେକ୍ଷୀରେ, ଫକୀରମୋହନଙ୍କ ପ୍ରାଥମିକ ସାରସ୍ୱତ ସୃଷ୍ଟିର ଭାଷା କିଭଳି ବଙ୍ଗ ଭାଷା ଦ୍ୱାରା ପ୍ରଭାବିତ, ତାହା ସୂଚାଇଥିଲେ । ଏହି ସୂଚନା ଗଠନାତ୍ମକ ଭାବରେ ସମସ୍ତ ସୌଜନ୍ୟ ସହ ଉଲ୍ଲିଖିତ ହୋଇଥିଲା । ବ୍ୟାସକବି ଫକୀରମୋହନ ମଧ୍ୟ ଏଭଳି ସମାଲୋଚନାର ପ୍ରତିକୂଳ ପ୍ରତିକ୍ରିୟା ପ୍ରକାଶ ନ କରି, ଏହାକୁ ଏକ ସ୍ୱାଗତଯୋଗ୍ୟ ଆହ୍ୱାନ ରୂପେ ଗ୍ରହଣ କରିଥିଲେ । ପରବର୍ତ୍ତୀ ସାହିତ୍ୟ-ସୃଷ୍ଟିରେ, ଫକୀରମୋହନ ଯେଉଁ ଶୁଦ୍ଧ ଓଡ଼ିଆ ଭାଷାର ପରଂପରା ପ୍ରବର୍ତ୍ତନ କଲେ, ସେଥିପାଇଁ ଏହି ଅଜ୍ଞାତନାମା ସମାଲୋଚକଙ୍କର ନିର୍ଦ୍ଦିଷ୍ଟ ଅବଦାନ ଥିବା କଥା ଅସ୍ୱୀକାର କରାଯାଇ ନ ପାରେ । କିନ୍ତୁ ଶଂସିତ ଆଲୋଚନା, କେବଳ ଭାଷାତତ୍ତ୍ୱ-ଭିତ୍ତିକ ହୋଇଥିବାରୁ, ଏହାକୁ ସର୍ଜନାତ୍ମକ ସମାଲୋଚନା ପର୍ଯ୍ୟାୟଭୁକ୍ତ କରିହେବ ନାହିଁ ।

ଉତ୍କଳରେ ବ୍ରାହ୍ମଧର୍ମର ପ୍ରସାର ଫଳରେ ବିବର୍ଦ୍ଧିତ ହେଉଥିବା ନୈତିକ ରୁଚିଶୀଳ ସମାଲୋଚନା ମଧ୍ୟ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା ନୁହେଁ ।

'ଉତ୍କଳ ଦୀପିକା' ବ୍ୟତୀତ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ 'ଉତ୍କଳ ପୁତ୍ର', ଚୈତନ୍ୟ ପ୍ରସାଦ ରାୟଙ୍କ ଦ୍ୱାରା ସମ୍ପାଦିତ 'ଉତ୍କଳ ପ୍ରଭା' ପ୍ରଭୃତି ସମସାମୟିକ ପତ୍ରିକାଗୁଡ଼ିକ ଯେଉଁ ସମାଲୋଚନା ପ୍ରବର୍ତ୍ତନ କରିଥିଲେ, ତାହାର ଅନ୍ତରାଳରେ ବ୍ରାହ୍ମଧର୍ମର ରୁଚିଶୀଳ, ସାତ୍ତ୍ୱିକ ତାତ୍ତ୍ୱିକତା (Puritanism) କାର୍ଯ୍ୟ କରୁଥିଲା। ଏହି ତାତ୍ତ୍ୱିକ ରୁଚିଶୀଳତା ଏଭଳି ପ୍ରଚଣ୍ଡ ଭାବେ ବିସ୍ଫୋରିତ ହେଉଥିଲା ଯେ, ସର୍ଜନଶୀଳ ସାହିତ୍ୟ ସମାଲୋଚନା ପାଇଁ ଆବଶ୍ୟକ ହେଉଥିବା ସମତୁଲ ଦୃଷ୍ଟି ଓ ଉଦାରତାକୁ ବିସର୍ଜନ ଦେବା ପାଇଁ ଏମାନେ ପଶ୍ଚାତ୍‌ପଦ ହେଉ ନଥିଲେ। 'ଉତ୍କଳ ପ୍ରଭା'ର ସାହିତ୍ୟିକ ଆଭିମୁଖ୍ୟ ଓ ଦିଗ୍‌ଦର୍ଶନ ସୂଚାଇବାକୁ ଯାଇ ସଂପାଦକ କହନ୍ତି— "ସାରଳା ଦାସଙ୍କ 'ମହାଭାରତ', ଜଗନ୍ନାଥ ଦାସଙ୍କ 'ଭାଗବତ', ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ' ପୁଣି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟମାଳା, ଜାତୀୟ ସାହିତ୍ୟ ପର୍ଯ୍ୟାୟଭୁକ୍ତ ନୁହେଁ।" ପଶ୍ଚାତ୍ତରେ ସମ୍ପାଦକ, ଏହା ସମାଜସ୍ଥ ସାଧାରଣ ଲୋକର କର୍ତ୍ତବ୍ୟବୋଧ, ନୀତିଶିକ୍ଷା ଓ ଚରିତ୍ର ଗଠନ କରିପାରୁ ନ ଥିବା ଉପଲବ୍‌ଧି କରି, 'ଏହା କି ଗୋଟିଏ ଜାତୀୟ ସାହିତ୍ୟ' ବୋଲି ପ୍ରଶ୍ନ ଉଠାଇଛନ୍ତି। ବସ୍ତୁତଃ ଏହା କେବଳ ତତ୍କାଳୀନ ନୈତିକ ରୁଚିଗ୍ରସ୍ତ ସମାଲୋଚନା ଧାରାର ଏକ ଅଂଶ ହୋଇଥିବାରୁ, ସର୍ଜନଶୀଳ ସମାଲୋଚନା ପର୍ଯ୍ୟାୟଭୁକ୍ତ ହୋଇପାରି ନାହିଁ।

ପରବର୍ତ୍ତୀ କାଳରେ ପ୍ରାଚୀନ ତଥା ଆଧୁନିକ ସାହିତ୍ୟର ଗୋଷ୍ଠୀ ବିବାଦକୁ କେନ୍ଦ୍ର କରି ଗଢ଼ି ଉଠିଥିବା ସମାଲୋଚନା, ପରିମାଣାତ୍ମକ ଦୃଷ୍ଟିରୁ ଅପେକ୍ଷାକୃତ ପର୍ଯ୍ୟାପ୍ତ ହେଲେ ମଧ୍ୟ, ଗୁଣାତ୍ମକ ଦୃଷ୍ଟିରୁ ବ୍ୟକ୍ତିଗତ ଈର୍ଷା ଓ ଅସୂୟା ଜର୍ଜରିତ ଏକ ସଂକୀର୍ଣ୍ଣ ସାହିତ୍ୟିକ ରୁଚିବୋଧର ପରିଚାୟକ। ଊନବିଂଶ ଶତାବ୍ଦୀର ଶେଷ ଦଶକର ପ୍ରଥମ ପର୍ଯ୍ୟାୟରେ, ଗଢ଼ିଉଠିଥିବା 'ଇନ୍ଦ୍ରଧନୁ' ଓ 'ବିଜୁଳି'ର ଗୋଷ୍ଠୀବିବାଦ, ଏହାର ଏକ ସର୍ବକାଳୀନ ଦୃଷ୍ଟାନ୍ତ। ଏଥିରେ ପ୍ରାଚୀନ ଅଥବା ଆଧୁନିକ ସାହିତ୍ୟର ମୂଲ୍ୟବୋଧ ଯଥାର୍ଥ ଭାବେ ସମୀକ୍ଷିତ ହୋଇ ପାରି ନାହିଁ। ପୁଣି ସେଇ ସମାଲୋଚନା ଭବିଷ୍ୟତର ସମ୍ଭାବ୍ୟ ମୌଳିକ ସାହିତ୍ୟ ସୃଷ୍ଟି ପାଇଁ ସୁସ୍ଥ ପୃଷ୍ଠଭୂମି

ଫିଟାଇବା ମଧ୍ୟ ସମ୍ଭବ ହୋଇ ନାହିଁ । କାରଣ ସାହିତ୍ୟ ଯେ, ପ୍ରାଚୀନ-ଆଧୁନିକ, ଅତୀତ-ବର୍ତ୍ତମାନ-ଭବିଷ୍ୟତ ନିର୍ବିଶେଷରେ ଏକ ଅଖଣ୍ଡ ରସ-ବାହିନୀ, ଜୀବନଧର୍ମୀ ଅନ୍ତଃସଲିଳା ଫଲ୍‌ଗୁ, ଏହା 'ଇନ୍ଦ୍ରଧନୁ' ଓ 'ବିଜୁଳି' ଗୋଷ୍ଠୀର ଏକଦେଶଦର୍ଶୀ ଆଭିମୁଖ୍ୟରେ ଉପଲବ୍ଧି ହୋଇ ନ ଥିଲା । କେବଳ ସମାଲୋଚନା ପାଇଁ ସମାଲୋଚନା ଏବଂ ବ୍ୟକ୍ତିଗତ ଆକ୍ରୋଶଜନିତ ପାରସ୍ପରିକ ବିରୋଧୀ ବିଷୋଦ୍‌ଗୀରଣ ଏମାନଙ୍କର ଆଭିମୁଖ୍ୟ ଥିଲା । ଅଥଚ ସାହିତ୍ୟ ସମୀକ୍ଷାର ସୁରୁଚି-ଶାଳୀନତା, ସହନଶୀଳତା ଓ ସାମଗ୍ରିକ ଦୃଷ୍ଟିକୋଣ ନ ଥିଲେ, ସର୍ଜନଶୀଳ ସାହିତ୍ୟ ସମୀକ୍ଷା ସମ୍ଭବପର ନୁହେଁ । ବିସ୍ମୟର ବିଷୟ ଏ ଯାବତ୍ ଓଡ଼ିଆ ସାହିତ୍ୟରେ ଗୋଷ୍ଠୀ ବିବାଦର ଅବସାନ ହୋଇ ନାହିଁ । ଅତୀତ ଇତିହାସରୁ ଆମର ବନ୍ଧୁ ସାହିତ୍ୟ-ସମୀକ୍ଷକ ବିଶେଷ କିଛି ଶିକ୍ଷାଲାଭ କରିଥିବା ଭଳି ମନେହୁଏ ନାହିଁ । ଫଳରେ ଅନସୂୟ, ସମାହିତ, ସୁସ୍ଥ, ସର୍ଜନଶୀଳ ସାହିତ୍ୟ ସୃଷ୍ଟିର ପରଂପରା ଏବେ ମଧ୍ୟ ବିଡ଼ମ୍ବିତ ହେଉଛି ।

ବ୍ୟକ୍ତି-ବିଶେଷ ନୁହେଁ, ସାହିତ୍ୟ ହିଁ ସର୍ଜନଶୀଳ ସମୀକ୍ଷାର ଭରକେନ୍ଦ୍ର ହେବା ଉଚିତ୍ ବୋଲି, 'ଉତ୍କଳ ସାହିତ୍ୟ'ର ସଂପାଦକ ବିଶ୍ୱନାଥ କର ଅଭିମତ ଦେଇଥିଲେ । ଏହି ସାହିତ୍ୟ ସମୀକ୍ଷା, ସୌଜନ୍ୟ, ସୁରୁଚି ଓ ଶାଳୀନତାର ସୀମା ଅତିକ୍ରମ କରିବା ଅବାଞ୍ଛିତ ବୋଲି ସେ ସ୍ପଷ୍ଟ ଭାବେ ଦର୍ଶାଇଥିଲେ । ପ୍ରାଚୀନତାର ଅନୁରୋଧରେ ଉନ୍ନତର ପଥରୋଧ କରିବା ଯେଭଳି ଅଶୋଭନୀୟ ; ନୂତନତାର ନାମରେ ପ୍ରାଚୀନ ମୂଲ୍ୟବୋଧ ପ୍ରତି ଅବଜ୍ଞା ବା ଅନାସ୍ଥା ପ୍ରକାଶ ସେହିଭଳି ନିନ୍ଦନୀୟ । 'ଉତ୍କଳ ସାହିତ୍ୟ', ପ୍ରାଚୀନ ଓ ନୂତନ—ଉଭୟବିଧ ସାହିତ୍ୟର ସଂରକ୍ଷଣ, ସଂବର୍ଦ୍ଧନ ଓ ସମୀକ୍ଷଣ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିବ ବୋଲି ଶ୍ରୀ କର ସଂପାଦକୀୟ ମନ୍ତବ୍ୟ ଦେଇଥିଲେ । ବସ୍ତୁତଃ ସର୍ଜନଶୀଳ ସମାଲୋଚନାର ଅନୁକୂଳ ଭୂମି ପ୍ରସ୍ତୁତି ପାଇଁ ବିଶ୍ୱନାଥ କରଙ୍କ ଦାନ ଯଥେଷ୍ଟ ।

କବିଗୁରୁ ରବୀନ୍ଦ୍ରନାଥଙ୍କ ସାହିତ୍ୟ ସମୀକ୍ଷା, ତାଙ୍କର ମୌଳିକ ସାହିତ୍ୟ-ସୃଷ୍ଟି ଭଳି ମହିମାନ୍ୱିତ । କାଳିଦାସଙ୍କର 'ଋତୁସଂହାର' କାବ୍ୟ

ସଂପର୍କରେ ମନ୍ତବ୍ୟ ଦେବାକୁ ଯାଇ, ଏଥିରେ ପ୍ରତିପାଦିତ ପ୍ରଣୟବୋଧ କେଵଳ ଦେହ-ସମ୍ବଳୀ ଓ ଏହାର ଉତ୍ତରଣ କେଵଳ ସମ୍ଭବପର ହୋଇପାରି ନାହିଁ, ତା'ର ଏକ ଉପୋତ୍ତୀର୍ଣ୍ଣ ସର୍ଜନାତ୍ମକ ସୂଚନା ଦିଅନ୍ତି କବିଗୁରୁ ରବୀନ୍ଦ୍ରନାଥ ।

"ଋତୁସଂହାର, କାଳିଦାସଙ୍କର ଅପରିପକ୍ୱ ବୟସର ସୃଷ୍ଟି । ସୁତରାଂ ତହିଁରେ ତରୁଣ-ତରୁଣୀଙ୍କ ଯେଉଁ ମିଳନ ସଂଗୀତ ଅଛି, ତାହାର ସ୍ୱରଗ୍ରାମ ଲାଳସାର ନିମ୍ନଭାଗ ସପ୍ତକରୁ ଆରମ୍ଭ ହୋଇଛି, 'ଶକୁନ୍ତଳା' ଓ 'କୁମାର ସମ୍ଭବମ୍' ସଦୃଶ ତପସ୍ୟାର ଉଚ୍ଚତମ ସପ୍ତକରେ ଯାଇ ପହଞ୍ଚିପାରି ନାହିଁ ।"

ମହାକବି କାଳିଦାସଙ୍କ କାବ୍ୟଚେତନାର କ୍ରମୋତ୍ତରଣ ଗ୍ରାଫ୍, ଏଭଳି ତୁଳନାତ୍ମକ ସ୍ଥିତିରେ, ପୁଣି ରୂପକଳ୍ପଧର୍ମୀ କାବ୍ୟିକ ଭାଷାରେ, ସ୍ୱଳ୍ପ ପରିସର ମଧ୍ୟରେ ପ୍ରକାଶ କରିବା, କେବଳ ତାଙ୍କ ସାରସ୍ୱତ ପ୍ରତିଭା ପକ୍ଷରେ ହିଁ ସମ୍ଭବପର । 'ଋତୁସଂହାର'—ତାରୁଣ୍ୟ-ଉତ୍ସପରେ ଉଷ୍ମ, ଦେହଜ ମିଳନ ସଂଗୀତରେ ଝଙ୍କୃତ ହେଲେ ମଧ୍ୟ ଦୃଶ୍ୟମାନ ବିରାଟ ପ୍ରକୃତିକୁ ମାନବ ପ୍ରକୃତି ପ୍ରକଟନର ଏକ ସାର୍ଥକ କ୍ୟାନଭାସ୍ ରୂପେ ଗ୍ରହଣ କରି; କବି କାଳିଦାସ କେଭଳି ଏକ ଅନନ୍ୟ କାବ୍ୟିକ ପ୍ରତିଭାର ସଂକେତ ଦେଇଛନ୍ତି, ତା'ର ସୂଚନା ଦେବାକୁ ଯାଇ, ରବୀନ୍ଦ୍ରନାଥ ପୁଣି କହନ୍ତି—"କବି ନବ ଯୌବନର ଏ ଲାଳସାକୁ ପ୍ରକୃତିର ବିଚିତ୍ର ଓ ବିରାଟ ସ୍ୱର ସହିତ ମିଳିତ କରି, ମୁକ୍ତ ଆକାଶର ମଧ୍ୟଭାଗରେ ତାକୁ ଝଂକୃତ କରିଛନ୍ତି । ଧାରାଯନ୍ତ୍ର-ମୁଖରିତ ନିଦାଘ, ଦିନାନ୍ତର ଚନ୍ଦ୍ରକିରଣ, ଏହାରି ମଧ୍ୟରେ ଦ୍ୱିକାୟୁ ସ୍ୱରକୁ ସଂଯୋଜିତ କରୁଛି, ବର୍ଷାର ନବଜଳ ସିକରରେ ଛିନ୍ନତାପ, ବନାନ୍ତରେ ପବନଘୂର୍ଣ୍ଣିତ କଦମ୍ବ ଶାଖା ଏହାର ଛନ୍ଦରେ ଆନ୍ଦୋଳିତ; ଅପକ୍ୱଶାଳି ରୁଚିରା ଶାରଦ-ଲକ୍ଷ୍ମୀ, ତା'ର ହଂସରବ ନୂପୁର ଧ୍ୱନିକୁ ଏହାର ତାଳେ ତାଳେ ମନ୍ଦ୍ରିତ କରୁଛି ଏବଂ ବସନ୍ତର ଦକ୍ଷିଣା-ବାୟୁ-ଚଞ୍ଚଳ କୁସୁମିତ ଆମ୍ର ଶାଖାରେ କଳମର୍ମର, ଏହାର ତାନେ ତାନେ ବିସ୍ତୀର୍ଣ୍ଣ, ବିରାଟ ପ୍ରକୃତି ମଧ୍ୟରେ, ଯେଉଁଠାରେ ଯା'ର ସ୍ୱାଭାବିକ ସ୍ଥାନ, ସେଠାରେ ତାକୁ ସ୍ଥାପନ କରି ଦେଖିଲେ, ତା'ର ଅତିଗ୍ରତା ନ ଥାଏ । ସେଠାରୁ ବିଚ୍ଛିନ୍ନ କରି ଆଣି ମନୁଷ୍ୟର ଗଣ୍ଡି

ମଧ୍ୟରେ ସଂକୀର୍ଣ୍ଣ କରି ରଖିଲେ, ତାହା ବ୍ୟାଧି ସଦୃଶ ଉତ୍ପନ୍ନ ଓ ଶୋଷଣ ଦେଖାଯାଏ ।"

'ଋତୁସଂହାର', ମହାକବି କାଳିଦାସଙ୍କର ଅପରିପକ୍ୱ ସୃଷ୍ଟି ହେଲେ ମଧ୍ୟ, ତନ୍ମଧ୍ୟରେ ବିକଶୋନ୍ମୁଖୀ ତୁଙ୍ଗ ପ୍ରତିଭା କିଭଳି ପ୍ରକଟିତ ହୋଇଛି ଓ ଏହି ପ୍ରକଟନ ମଧ୍ୟ ବିଶ୍ୱ-ପ୍ରକୃତି ତଥା ମାନବ-ପ୍ରକୃତିକୁ କିଭଳି ଐକତାନରେ ଝଙ୍କୃତ କରିପାରିଛି, ତାହା ଉପରୋକ୍ତ ଉକ୍ତିରେ ସାର୍ଥକ ଭାବେ ପ୍ରତିପାଦିତ । ସର୍ଜନାତ୍ମକ ସାହିତ୍ୟ ସମାଲୋଚନାର ପରିଭାଷା, ପରିବେଷଣ ଶୈଳୀର ଏହା ଏକ ସର୍ବକାଳୀନ ଦୃଷ୍ଟାନ୍ତ ।

ରାଧାନାଥ ମୁଖ୍ୟତଃ କାବ୍ୟର କବି । ସ୍ୱତନ୍ତ୍ର ଭାବେ ସେ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷାରେ ସ୍ୱତଃପ୍ରବୃତ୍ତ ଭାବେ ଜଡ଼ିତ ହୋଇ ନାହାନ୍ତି । କିନ୍ତୁ ସାମଗ୍ରିକ ଭାବେ, ସ୍ରଷ୍ଟାବିଶେଷଙ୍କ ମୌଳିକ ସାହିତ୍ୟ ସୃଷ୍ଟି ଉପରେ ସେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା କବି ରାଧାନାଥଙ୍କୁ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷକର ଆଦ୍ୟ ଗୌରବ ଆଣି ଦେଇଛି । ରାଧାନାଥ ୨୮।୭।୧୯୦୭ରେ ଗଙ୍ଗାଧରଙ୍କୁ ଲେଖିଥିବା ଏକ ପତ୍ରରେ, 'କୀଚକବଧ' ସମ୍ବନ୍ଧରେ ମନ୍ତବ୍ୟ ଦେବାକୁ ଯାଇ ଲେଖିଛନ୍ତି—

"କାବ୍ୟ ଖଣ୍ଡିକ ସ୍ଥୁଳରେ ଅତି ସୁନ୍ଦର ହୋଇଛି । ଆରମ୍ଭରେ ବିରାଟ ନଗରୀର ବର୍ଣ୍ଣନା ସୁନ୍ଦର ସତ୍ୟ, ମାତ୍ର ମୋର ମତରେ ଏହା ଅଯଥା ଦୀର୍ଘ ହୋଇଛି । ବର୍ଣ୍ଣନା ଯେତେ ସୁନ୍ଦର ହେଉ, ତାହା ବହିରଙ୍ଗ ମାତ୍ର । ମୂଳ ବିଷୟକୁ ବର୍ଣ୍ଣନା ଦ୍ୱାରା ଘୋଡ଼ାଇ ପକାଇବାର ଉଚିତ ନୁହେଁ ଏବଂ କବି ନିଜର ବର୍ଣ୍ଣନା ପାଟବ ଦେଖାଉଅଛନ୍ତି, ପାଠକ ମନରେ ଏହି ଭାବ ଉଦିତ ହେବା ଉଚିତ ନୁହେଁ ।"

ରାଧାନାଥ, ପରବର୍ତ୍ତୀ ପତ୍ରରେ 'କୀଚକବଧ' ପାଠ କରି ଅତ୍ୟନ୍ତ ପ୍ରୀତ ହେବା ଓ ମେହେରଙ୍କୁ ଆଉ କିଛି ନ ଲେଖି ମଧ୍ୟ, କେବଳ 'ଇନ୍ଦୁମତୀ' ଓ 'କୀଚକବଧ' ଦ୍ୱାରା ଓଡ଼ିଆ ସାହିତ୍ୟ ଜଗତରେ ଅମର ହେବେ ବୋଲି ଅଭିମତ ଦେଇଛନ୍ତି । ଅଥଚ ମେହେର କାବ୍ୟ ପ୍ରତିଭାର ବିମୁଗ୍ଧ ପାଠକ

ହୋଇ ମଧ୍ୟ, ବିରାଟ ନଗରୀର ବର୍ଣ୍ଣନାତିରିକ୍ତତା ସୁନ୍ଦର ହେଲେ ମଧ୍ୟ ମୂଳ କଥାବସ୍ତୁର ପ୍ରବହମାନତାକୁ କିଭଳି ବ୍ୟାହତ କରୁଛି, ସେ ତାହା ସ୍ପଷ୍ଟ ଭାବେ ଦର୍ଶାଇଛନ୍ତି ।

ଏହାର ମାତ୍ର ପଚିଶ ଦିନ ପରେ ୨୧ । ୮ । ୧୯୦୭ରେ ମେହେରଙ୍କ 'କୀଚକବଧ' କାବ୍ୟ ସମ୍ବନ୍ଧରେ ରାଧାନାଥଙ୍କ ବହୁଚର୍ଚ୍ଚିତ ମନ୍ତବ୍ୟ—

"ପୁରାତନରେ ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବା, ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ଅଟେ ।"

'କୀଚକବଧ' କାବ୍ୟ ସମ୍ପର୍କୀୟ ଏବମ୍ବିଧ ମନ୍ତବ୍ୟ, ଓଡ଼ିଆ ସର୍ଜନଶୀଳ ସମାଲୋଚନାର ଅଗ୍ରମାରମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଧାନାଥଙ୍କ ଏହି ବକ୍ତବ୍ୟ, କେବଳ ଗଙ୍ଗାଧରଙ୍କ 'କୀଚକବଧ' ବା ମେହେର କାବ୍ୟ-ମାନସ ନୁହେଁ, ରାଧାନାଥଯୁଗୀୟ କାବ୍ୟ-ମାନସର ଏକ ରସୋତ୍ତୀର୍ଣ୍ଣ ଭାଷ୍ୟ । ଗଙ୍ଗାଧରଙ୍କ ଭଳି, ରାଧାନାଥଙ୍କ କାବ୍ୟ-ଚେତନାରେ ପୁରାତନରେ ନୂତନତା ଓ ଆହୃତ କଥାବସ୍ତୁରେ ମୌଳିକତା ପ୍ରତିଫଳିତ ହୋଇଛି । କିନ୍ତୁ ରାଧାନାଥ ଗ୍ରୀକ୍ କବି ଓଭିଡ୍‌ଙ୍କର 'ମେଟାମରଫସିସ୍' ଓ ଅନ୍ୟାନ୍ୟ ପାଶ୍ଚାତ୍ୟ କଥାବସ୍ତୁ ଆହରଣରେ ମୌଳିକତା ପ୍ରଦର୍ଶନ କରି ଏବଂ 'ଦେଦାର-ଗୌରୀ', 'ଉଷା' ତଥା 'ଚନ୍ଦ୍ରଭାଗା' ଭଳି କାବ୍ୟରେ ପୁରାତନ ପରଂପରାରେ ନୂତନତା ସଂଯୋଜିତ କରି, ତିକ୍ତ ପ୍ରତିକୂଳ ସମାଲୋଚନାର ଶରବ୍ୟ ହୋଇଥିଲେ । କିନ୍ତୁ ଏହା ଯେ ସର୍ଜନଶୀଳ ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ଓ ଏହି ଅଧିକାର ବଳରେ, ପ୍ରଲମ୍ବିତ ରୀତିଯୁଗୀୟ କାବ୍ୟ ପରଂପରା ଏକ ନୂତନ ମୋଡ଼ ନେବାକୁ ଯାଉଛି, ଏ ବିଷୟରେ ତାଙ୍କର ଅସଂଦିଗ୍ଧ ଆତ୍ମପ୍ରତ୍ୟୟ ଥିଲା । ଏହି ପ୍ରଚଣ୍ଡ ଆତ୍ମପ୍ରତ୍ୟୟବୋଧ ହିଁ ତାଙ୍କୁ ଯୁଗସ୍ରଷ୍ଟାର ଆସନ ଦେଇପାରିଲା । ଏଠାରେ କୌତୂହଳୋଦ୍ଦୀପକ ବିଷୟ ହେଉଛି, କୀଚକ ବଧ ସମ୍ପର୍କିତ ଉକ୍ତି—"ପୁରାତନକୁ ନୂତନ କରି ଗଢ଼ିବା ଏବଂ ଆହରଣରେ ମୌଳିକତା ପ୍ରତିଫଳିତ କରିବା, ପ୍ରତିଭାର ବିଧି ପ୍ରତିପାଦିତ

ଅଧିକାର ଅଛେ ।" ଏହାକୁ ରାଧାନାଥ ୧୩ । ୮ । ୧୯୦୭ ମସିହାର ପତ୍ରରେ କିଞ୍ଚିତ ପରିବର୍ତ୍ତନ କରିବା ପାଇଁ ଅନୁରୋଧ କରିଛନ୍ତି—

"ଏହି ଅଂଶକୁ ନିମ୍ନ ରୂପେ ପରିବର୍ତ୍ତନ କରିଦେବା ହେବେ— ପୁରାତନରେ ନୂତନତା ଓ ଅଦ୍ଭୁତରେ ମୌଳିକତା ପ୍ରତିଫଳିତ କରିବା ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ଅଟେ ।"

ସର୍ଜନାତ୍ମକ ସାହିତ୍ୟ ସମୀକ୍ଷାରେ ପ୍ରତ୍ୟେକ ଶବ୍ଦ କିଭଳି ସତର୍କତାର ସହ ନିର୍ବାଚିତ ହେବା ଆବଶ୍ୟକ, ପୁଣି ସଂକ୍ଷିପ୍ତତା ମଧ୍ୟରେ ଭାବ-ସମ୍ପନ୍ନତା ପ୍ରକଟିତ ହେବା ଆବଶ୍ୟକ, କବିବର ରାଧାନାଥ ତାଙ୍କ ପରିମାର୍ଜିତ ସମୀକ୍ଷଣ ପ୍ରକ୍ରିୟା ମଧ୍ୟରେ ସୂଚାଇ ଦେଇଛନ୍ତି । ପ୍ରତ୍ୟେକ ସର୍ଜନଶୀଳ ସମୀକ୍ଷକ, ଏହା ସଂପର୍କରେ ଅବହିତ ହେବା ବାଞ୍ଛନୀୟ ।

ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଅଥଚ କୌତୂହଳୋଦ୍ଦୀପକ ବିଷୟ ହେଉଛି, ପ୍ରାୟ ମୌଳିକ ସାହିତ୍ୟ-ସ୍ରଷ୍ଟାମାନେହିଁ, ସର୍ଜନଶୀଳ ସମୀକ୍ଷା ଧାରଣ ପ୍ରବର୍ତ୍ତନ କରିଛନ୍ତି । ସର୍ଜନଶୀଳତାରହିତ ଅନୁଦାରତା ଓ ପଣ୍ଡିତମ୍ମନ୍ୟ ଆଡ଼ମ୍ବରତା ସର୍ଜନଶୀଳ ସାହିତ୍ୟ ସମାଲୋଚନାର ବାଧକ । ସେଥିପାଇଁ ରାଧାନାଥଙ୍କଠାରୁ ଆରମ୍ଭ କରି ଆଧୁନିକ ଓଡ଼ିଆ ଯୁଗସ୍ରଷ୍ଟା ରାଧାନାଥ ଓ ତାଙ୍କର ସମସାମୟିକ ଭକ୍ତ କବି ମଧୁସୂଦନଙ୍କ ବାଦ ଦେଇ, ପଣ୍ଡିତ-କବି ନୀଳକଣ୍ଠ, ଡଃ ମାୟାଧର ମାନସିଂହ, କବି ସର୍ବି ରାଜତରାୟ, କବି ଓ କଥାକାର କୁଞ୍ଜବିହାରୀ ଦାଶ, କଥାକାର ସୁରେନ୍ଦ୍ର ମହାନ୍ତି, ଗୋପୀନାଥ ମହାନ୍ତିଙ୍କ ସମେତ ସାଂପ୍ରତିକ କବି ଅଧ୍ୟାପକ ଚନ୍ଦ୍ରମଣି ବେହେରା, ଶ୍ରୀ ଚିତ୍ତରଞ୍ଜନ ଦାସ, ଅଧ୍ୟାପକ ବୈଷ୍ଣବଧର ରାଉତ, କବି ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ଓ କବି ରବି ସିଂହ ପ୍ରମୁଖ ସର୍ଜନଶୀଳ ସାହିତ୍ୟ ସମାଲୋଚନାର କେତେଜଣ ବିଶିଷ୍ଟ ଦିଗ୍‌ଦର୍ଶକ । ଅବଶ୍ୟ ଏହାର ଯେ-ବ୍ୟତିକ୍ରମ ବା ନିପାତନ ନାହିଁ, ଏଭଳି କହିବା ସମ୍ଭବ ନୁହେଁ, କିନ୍ତୁ ଏଭଳି ନିପାତନ ବା ବ୍ୟତିକ୍ରମ ସ୍ୱଳ୍ପ ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ 'ମହାଯାତ୍ରା' ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ଭକ୍ତ-କବି ମଧୁସୂଦନ ଯେଉଁ ପକ୍ଷପାତଶୂନ୍ୟ, ନିର୍ଭୀକ, ନିରପେକ୍ଷ ସମୀକ୍ଷଣ ରୁଚିର ସଂକେତ ଦେଇଛନ୍ତି, ତାହା ସର୍ଜନଶୀଳ ସାହିତ୍ୟ ସମାଲୋଚନାର ସର୍ବକାଳୀନ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇ ପାରିବ ।

ଅସଂପୂର୍ଣ୍ଣ ମହାକାବ୍ୟ 'ମହାଯାତ୍ରା'ର ସ୍ରଷ୍ଟା କବିବର ରାଧାନାଥ ମଧୁସୂଦନଙ୍କ ଶିକ୍ଷା-ଗୁରୁ, ଦୀକ୍ଷା-ଗୁରୁ ମଧ୍ୟ । ମଧୁସୂଦନଙ୍କ କାବ୍ୟ ଚେତନାର ସେ କେବଳ ଗ୍ରାହକ ନୁହନ୍ତି; ବରଂ ପ୍ରୋତ୍ସାହକ, ପୃଷ୍ଠପୋଷକ ତଥା ହିତାକାଂକ୍ଷୀ ଓ ଶୁଭେଚ୍ଛୁ । ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ଓ ଯୁଗୀୟ ପୁରୋଧା ରୂପେ ରାଧାନାଥଙ୍କୁ ସ୍ୱୀକୃତି ଦେବାକୁ ଯାଇ ମଧୁସୂଦନ କହନ୍ତି--

"ଆଧୁନିକ ଉତ୍କଳ ସାହିତ୍ୟ ମନ୍ଦିରର ସର୍ବଶ୍ରେଷ୍ଠ ବିନାଣି, ମହାଯାତ୍ରାର କବି ଅଟନ୍ତି ।" ଶଂସିତ କାବ୍ୟର ବିଷୟ ନିର୍ବାଚନର ସେ ଉଚ୍ଚ ପ୍ରଶଂସା କରିଛନ୍ତି—'ମହାଶୋକାନ୍ତ ମହାଯାତ୍ରା ଉପାଖ୍ୟାନ ପରେ ଉଦାର ବା ଗମ୍ଭୀର କଥା ଆଉ କଣ ଅଛି ?" ଅଥଚ ଶୋକ ବୈରାଗ୍ୟାନ୍ତ ଏହି ମହାନ୍ ଶକ୍ତିଶାଳୀ ଟ୍ରାଜେଡ଼ିଧର୍ମୀ କଥାବସ୍ତୁର ଗାମ୍ଭୀର୍ଯ୍ୟ, ମହତ୍ତ୍ୱ ଓ ମର୍ଯ୍ୟାଦା ରାଧାନାଥ ଅନାୟାସରେ ରଖିପାରି ନାହାନ୍ତି । ବିନମ୍ର ଅଥଚ ଦୃପ୍ତ ସ୍ୱରରେ ଏହା ଭକ୍ତକବିଙ୍କ ଦ୍ୱାରା ଉଦ୍‌ଘୋଷିତ ।

ମହାକାବ୍ୟର ମନୋହାରିତା ପରିପ୍ରେକ୍ଷୀରେ ମହାଯାତ୍ରାର ମୂଲ୍ୟାୟନ କରିବାକୁ ଯାଇ ଶଂସିତ କାବ୍ୟର ବର୍ଣ୍ଣନା-ନୈପୁଣ୍ୟ ସହିତ ଗୁରୁତ୍ୱପୂର୍ଣ୍ଣ ତ୍ରୁଟି ତଥା ଦୁର୍ବଳତା ଦର୍ଶାଇଛନ୍ତି ମଧୁସୂଦନ—

"ଏହି ସମ୍ବନ୍ଧରେ ମୋର ବକ୍ତବ୍ୟ ଏହି ଯେ, 'ମହାଯାତ୍ରା'ର କବି ବର୍ଣ୍ଣନା ବିଷୟରେ ସର୍ବଦା ଯେଉଁ ଶକ୍ତି, ସୌନ୍ଦର୍ଯ୍ୟ ଓ କୌଶଳ ଦେଖାଇଛନ୍ତି ତାହା ଅସାମାନ୍ୟ ଓ ସମଗ୍ର ଉତ୍କଳ ସାହିତ୍ୟ ମଧ୍ୟରେ ଅତୁଳ୍ୟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ସେ ବର୍ଣ୍ଣନାଗୁଡ଼ିକ ମଧ୍ୟରୁ କେତେକ ଅଂଶ

ସରସତା ସତ୍ତ୍ୱେ ମହାକାବ୍ୟର ଅନୁପଯୁକ୍ତ ।" ବିଶେଷ ଭାବେ ଚତୁର୍ଥ ସର୍ଗର ହୃଦୟସ୍ପୃହାଶ୍ମ ରୂପକ, ସରସ ବର୍ଣ୍ଣନା ପାଇଁ ବ୍ୟବହୃତ ରୂପକଳ୍ପ ଉପର ମହାକାବ୍ୟର ମହାନ୍ ଭାବ ଗାମ୍ଭୀର୍ଯ୍ୟକୁ ବିଫଳ କରୁଛି, ଏହା ସୁନିର୍ଦ୍ଦିଷ୍ଟ ଭାବେ ସୂଚିତ ।

ଏହି ଇଙ୍ଗିତଧର୍ମୀ ସୂଚନା ହିଁ ଯେ—କୌଣସି ସଚେତନ ପାଠକ ପାଇଁ ପର୍ଯ୍ୟାପ୍ତ ଦିଗ୍‌ଦର୍ଶନ । ଚତୁର୍ଥ ସର୍ଗର କଳ ଅବତରଣ ଭଳି ହୃଦୟଗ୍ରାହୀ ରୂପକରୁ, ମହାକାବ୍ୟର ମହତ୍ତ୍ୱକୁ ଖର୍ବୀକୃତ କରିଥିବାର ଭୂରି ଭୂରି ଦୃଷ୍ଟାନ୍ତ ଦିଆଯାଇପାରେ । ଦୃଷ୍ଟାନ୍ତ ସ୍ୱରୂପ—ପୁଷ୍ପ ମୁକୁଟ ପରିହିତ ବିଶ୍ୱବିଜୟୀ 'କାମ' କୁରଙ୍ଗ ତରଙ୍ଗ କ୍ଷଣା, ଚମ୍ପକବରଣା, ବିମ୍ବାଧରା, ଘନାମ୍ବୁକେଶୀ, ସ୍ମେରାନନା, ରତିକଣା, ରୂପବତୀ, ନରାପ୍ସରା, ବାରାଙ୍ଗନାବୃନ୍ଦ ପରିବୃତ୍ତ ହେବା କଥା ଉଲ୍ଲେଖ କରାଯାଇଛି । କିନ୍ତୁ ଏହି ଅବକାଶରେ ରୋମାଣ୍ଟିକ୍ ଶିଳ୍ପୀ ରାଧାନାଥ, ବାରାଙ୍ଗନାମାନଙ୍କର ଯୌନୋଦ୍ଦୀପକ ସୌନ୍ଦର୍ଯ୍ୟ ବର୍ଣ୍ଣନା ଦେବାର ଲୋଭ ସମ୍ବରଣ କରିପାରି ନାହାନ୍ତି—

"ଗୁରୁ ବକ୍ଷ କୋରକିତ ଉରଜ-କୋରକେ
ଲାଳସାର ସ୍ୱର୍ଣ୍ଣ ନୀଡ଼ କି ଅବା ଯେ ବେନି,
ସୁବଳିତ ରମ୍ଭା-ଊରୁ, ଆବୃତ ଦୁକୂଳେ,
ଯେଉଁ ଆବରଣ ଭେଦ ନିଭୃତ ପ୍ରଦେଶେ,
ସଞ୍ଚରଣେ ଲୋଳ ସଦା କାମୁକ କଳ୍ପନା ।"

ବର୍ଣ୍ଣନାର ପ୍ରଥମ ପର୍ଯ୍ୟାୟରେ କୋରକିତ ଉରଜକୁ ଲାଳସାର ସ୍ୱର୍ଣ୍ଣ ନୀଡ଼ ଭଳି ଏକ ଶକ୍ତିଶାଳୀ ରୂପକଳ୍ପ ସଙ୍ଗେ ତୁଳନା କରିବା, ଏକ ଉଚ୍ଚ-କୋଟୀର କାବ୍ୟ-ମନୀଷା ପକ୍ଷରେ ହିଁ ସମ୍ଭବ । ପକ୍ଷୀ-ପକ୍ଷିଣୀ—ଯେଉଁ କାମନା-ଜଡ଼ିତ ଉଷ୍ଣତା ଓ ଉଦ୍ଦୀପନାରେ ସୁରକ୍ଷିତ ଆବାସକୁ ଉଚ୍ଚକିତ କରିଥାନ୍ତି, ବାରାଙ୍ଗନାର କୋରକିତ ବକ୍ଷୋଜକୁ ତାହା ସହ ତୁଳନା କରିବା ଦ୍ୱାରା, କେବଳ ଆକୃତିଗତ ଭଙ୍ଗିମା ନୁହେଁ, ଗୁଣାତ୍ମକ ଉଷ୍ଣ କାମନାର

ପ୍ରତୀକ ହୋଇ, ଏହାକୁ ଏକ ସାର୍ଥକ ରୂପକଳ୍ପରେ ପରିଣତ କରିପାରିଛି । ପୁଣି ସ୍ୱର୍ଣ୍ଣମଣ୍ଡ ଭଳି ବିଶେଷଣ ପ୍ରଯୁକ୍ତ ହେବା ଦ୍ୱାରା ବିକ୍ଷୋଭ ସମ୍ପର୍କିତ ସ୍ୱପ୍ନାତୁରତା ମଧ୍ୟ ଅଭିବ୍ୟଞ୍ଜିତ ହେଉଛି । ସଙ୍କେତ ଦ୍ୱିତୀୟ ପର୍ଯ୍ୟାୟରେ କୋଳଦ୍ୱକୂଳ ଆବୃତ ସାବଲୀଳ ରମ୍ଭୋରୁର ଅନ୍ତରାଳରେ ଥିବା, ନିଭୃତ ପ୍ରଦେଶ'ରେ ଅଭିବ୍ୟଞ୍ଜିତ ଯୌନତା, ନୈଷଧୀୟ ଯୌନତାଠାରୁ ଊଣା ନୁହେଁ । 'କୋରକିତ ସ୍ୱର୍ଣ୍ଣମଣ୍ଡ', 'ବିକ୍ଷୋଭ' ଓ 'ରମ୍ଭୋରୁ' 'ନିଭୃତ ପ୍ରଦେଶ' ସୂଚିତ ରୋମାଣ୍ଟିକ୍ ସୌନ୍ଦର୍ଯ୍ୟ-ପ୍ରବଣତା ଯେତେ ସ୍ୱାଦ୍ୟ ହେଲେ ମଧ୍ୟ, ଏହା ଯେ କ୍ଲାସିକ୍‌ଧର୍ମୀ ମହାକାବ୍ୟର ଗୁରୁଗାମ୍ଭୀର୍ଯ୍ୟ ବ୍ୟାହତ କରିଛି ଓ ସମାନ୍ତରାଳ ଭାବେ ସମସ୍ତ କବିତ୍ୱବଳୟ ସତ୍ତ୍ୱେ ମହାକାବ୍ୟର ମର୍ଯ୍ୟାଦା କ୍ଷୁଣ୍ଣ କରିଛି, ତାହା ନିର୍ଭୀକ ଭାବେ ଦର୍ଶାଇଛନ୍ତି ସ୍ରଷ୍ଟା-ସମୀକ୍ଷକ ମଧୁସୂଦନ ।

ଏଠାରେ ସର୍ଜନାତ୍ମକ ସମୀକ୍ଷାର ଆଉ ଏକ ଭୂମିକା ଉଲ୍ଲେଖନୀୟ । ସର୍ଜନାତ୍ମକ ସମାଲୋଚନାର ଅଭିମୁଖ୍ୟ, ସ୍ରଷ୍ଟାକୁ କ୍ଷତବିକ୍ଷତ ନ କରି ବିନମ୍ର ସୌଜନ୍ୟ ସହ ନିର୍ଭୀକ ଭାବେ ମୌଳିକ ସୃଷ୍ଟିର ଦୋଷ-ଦୁର୍ବଳତା, ସର୍ବୋପରି ସାର୍ଥକତା ଦର୍ଶାଇ ସ୍ରଷ୍ଟାକୁ ପରବର୍ତ୍ତୀ ସାଧନାର ଅଗ୍ରଗତି ପାଇଁ ଅନୁପ୍ରେରିତ କରିବା ।

ପଲ୍ଲୀ କବି ନନ୍ଦକିଶୋର, ରାଧାନାଥଙ୍କ ପ୍ରକୃତି ତଥା ମଧୁସୂଦନଙ୍କ ପ୍ରକୃତିର ତୁଳନାତ୍ମକ ମୂଲ୍ୟାୟନ କରିବାକୁ ଯାଇ, ସର୍ଜନଶୀଳ ସମାଲୋଚନାର ଗତିଧାରାକୁ ସମ୍ପ୍ରସାରିତ କରିଥିବାର ଲକ୍ଷ୍ୟ କରାଯାଏ—

"ଉଭୟ ରାଧାନାଥ ଓ ମଧୁସୂଦନ ପ୍ରକୃତି-ଚିତ୍ରଣରେ ସିଦ୍ଧହସ୍ତ । କିନ୍ତୁ ରାଧାନାଥ ସେହି ପ୍ରକୃତି ଶୋଭାକୁ ପୂର୍ଣ୍ଣଯୌବନା ନାରୀ ରୂପେ ଦେଖନ୍ତି, ମଧୁବାବୁ ତାହାକୁ ଚିରକୁମାରୀ ରୂପରେ ଦେଖନ୍ତି । ଉଭୟ କବିଙ୍କ ଭାଷାରେ ମଧ୍ୟ ତଦନୁରୂପ ପାର୍ଥକ୍ୟ ପରିଲକ୍ଷିତ ହୁଏ । ରାଧାନାଥ ବାବୁଙ୍କ ଭାରତୀ ଗୃହିଣୀ, ଦୋଷ-ଗୁଣ, ରୁଢ଼ତା-କୋମଳତା ସଙ୍ଗରେ ଘେନି ଘରକରଣା କରନ୍ତି ଓ କବିଙ୍କ ନିକଟରେ କେତେବେଳେ ଅଟ୍ଟହାସ, କେତେବେଳେ

ଦୃଶି ବିଳାପ କରନ୍ତି । ପକ୍ଷାନ୍ତରେ ମଧୁବାବୁଙ୍କ ଭାରତୀ ସଂକୁଚିତା, ଇଷତ୍‌ଲଜ୍ଜିତା ଓ ମୃଦୁସ୍ମିତ-ସଂପନ୍ନା, ସେ ସୁଖରେ ଇଷତ୍ ମୃଦୁ ହାସ୍ୟ ଏବଂ ଦୁଃଖରେ ବିଷର୍ଣ୍ଣ ମୁଖଭଙ୍ଗୀରେ ସ୍ୱୀୟ ମନୋଭାବ ପ୍ରକାଶ କରନ୍ତି ।"

ଶଂସିତ ଉଦ୍ଧୃତରେ ରାଧାନାଥ ଓ ମଧୁସୂଦନଙ୍କର ପ୍ରକୃତ ଚିତ୍ରଣର ଏକ ତୁଳନାତ୍ମକ ସମୀକ୍ଷା ଦେଖିବାକୁ ମିଳେ । ଏହି ତୁଳନାତ୍ମକ ସମୀକ୍ଷା କାବ୍ୟିକ ରୂପକଳ୍ପ ପ୍ରୟୋଗରେ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା ପର୍ଯ୍ୟାୟକୁ ଉନ୍ନୀତ ହୋଇ ପାରିଛି ।

ବସ୍ତୁତଃ ଓଡ଼ିଆ ସାହିତ୍ୟରେ ରାଧାନାଥ, ମଧୁସୂଦନ, ନନ୍ଦକିଶୋର— ଏହି ସ୍ରଷ୍ଟା-ସମାଲୋଚକ ତ୍ରୟୀ ସର୍ଜନଶୀଳ ସାହିତ୍ୟ ସମାଲୋଚନାର ନବ ଦିଗନ୍ତ ଉନ୍ମୋଚନ କରିଛନ୍ତି ।

ସତ୍ୟବାଦୀ ଗୋଷ୍ଠୀର ଉଗ୍ର ଜାତୀୟତାବୋଧର ପ୍ରମୂର୍ତ୍ତି ପ୍ରତୀକ କବି ନୀଳକଣ୍ଠ, ଯୁଗସ୍ରଷ୍ଟା ରାଧାନାଥଙ୍କ ବିରୋଧରେ—

"କଉଶଲ୍ୟାଗଙ୍ଗା ଧଉଳି ଏବେ ନୟନେ ନାଚେ
କବିଙ୍କ ସୁମର ବିରାଗେ ମୁଖ ଫେରାଅ ପଛେ ।"

ଲେଖି ନୀରବ ରହି ନାହାନ୍ତି । ପକ୍ଷାନ୍ତରେ ଓଡ଼ିଆ ସାହିତ୍ୟ ପରଂପରାକୁ, ପରଂପରା ଓ ପୂର୍ବୋଦ୍ଦିଷ୍ଟ ପରିପ୍ରେକ୍ଷୀରେ ବିଶ୍ଳେଷଣ କରି, ସର୍ଜନଶୀଳ ସାହିତ୍ୟ ସମୀକ୍ଷାକୁ ଏକ ସତ୍ୟାଶ୍ରିତ ଯୌକ୍ତିକତାନିଷ୍ଠ ଦିଗ୍‌ଦର୍ଶନ ଦେଇ ପାରିଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସଙ୍କ ବୈଷ୍ଣବ ଧର୍ମ ସମ୍ବନ୍ଧୀୟ ଆଲୋଚନା, ଉଦାର ଧର୍ମପ୍ରାଣ ଦୃଷ୍ଟିରେ ଉଗ୍ରପନ୍ଥୀ ଏକଦେଶଦର୍ଶୀ ଭଳି ମନେ ହେଲେ ମଧ୍ୟ, ସାହିତ୍ୟ ଆତ୍ମାର କଳାତ୍ମକ ମୂଲ୍ୟାୟନ ପାଇଁ ସେ ଯେଉଁ ସମାଜକେନ୍ଦ୍ରିକ ସଂସ୍କୃତ (Socio-cultural) ଓ ସମାଜତାତ୍ତ୍ୱିକ ନୃତାତ୍ତ୍ୱିକତାମୁଖୀ (Socio-Anthropological) ବିଶ୍ଳେଷଣ ଧାରା ପ୍ରବର୍ତ୍ତନ କଲେ, ତାହା ସର୍ଜନଶୀଳ ସାହିତ୍ୟ ସମୀକ୍ଷାକୁ ଏକ ସତ୍ୟାଶ୍ରିତ ବୈଜ୍ଞାନିକ ଭିତ୍ତିଭୂମିରେ ପ୍ରତିଷ୍ଠିତ କଲା । ଆଦିକବି ଶାରଳା ଦାସ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ

କାବ୍ୟକୃତ ସମେତ ପ୍ରାଚୀନ ତଥା ମଧ୍ୟଯୁଗୀୟ ସାହିତ୍ୟର ପୁନର୍ମୂଲ୍ୟାୟନ ବେଳେ ସେ ଅନୁରୂପ ଆନ୍ତର୍ନିର୍ଭରଶୀଳ ବିଶ୍ଳେଷଣ ପଦ୍ଧତି ପ୍ରୟୋଗ କରି ଅବିସ୍ମରଣୀୟ ରହିଛନ୍ତି । 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ'କୁ 'ଗୃହାଣୀ' 'ଚଳଣି' ଓ 'ଚମକ' ପରିପ୍ରେକ୍ଷୀରେ କଳନା କରିଥିବା କଥା ସୂଚାଇ ସ୍ୱକୀୟ ବିଶ୍ଳେଷଣ ପଦ୍ଧତିର ସ୍ୱରୂପ ସେ ସଂଜ୍ଞାୟିତ କରିଛନ୍ତି—"ଏ ସବୁ ଭିତରେ ଚିନ୍ତା ଓ ଦର୍ଶନ, ସାଧନା ଓ ସୃଷ୍ଟି, ଭାବ ଓ ଅନୁଭୂତି କଳନାରେ ସଂସ୍କୃତିକୁ ଦେଖି, ସାହିତ୍ୟର କ୍ରମ ପରିଣତି ଦେଖିବା କଥା । ଓଡ଼ିଆରେ କହିଲେ— ଗୃହାଣୀ, ଚଳଣି ଓ ଭାବ, ଏହି ତିନୋଟିରେ ସମାଜର ସଂସ୍କୃତି ଦେଖାଯାଏ । ଗୃହାଣୀ ବୋଇଲେ, ଦର୍ଶନ ଓ ଦୃଷ୍ଟିଭଙ୍ଗୀ; ଏଥିରେ ତତ୍ତ୍ୱକଥା ଆଲୋଚନା ଓ ଆବିଷ୍କ୍ରିୟା ସବୁ ରହିଲା । ଚଳଣି ବୋଇଲେ, ସମାଜର ଆଦାନ ପ୍ରଦାନ ଘଟିତ ସମସ୍ତ ବ୍ୟବହାର ସମେତ ପ୍ରୟୋଜନର ସୃଷ୍ଟି ଓ କଳା ସୃଷ୍ଟି ଆଦି ବୁଝାଯିବ । ଚମକ ବୋଇଲେ, ସଂକେତର ଆକସ୍ମିକତା ଓ ଭାବର ପ୍ରସ୍ଫୁରଣ । ଗୃହାଣୀ ଓ ଚଳଣି ଭିତରେ, ଏହି ଚମକ ସବୁବେଳେ ପ୍ରକାଶ ପାଏ ।" ଏହା ହିଁ କଳା, କବିତାର ସୌଷ୍ଠବ ତଥା ସୌନ୍ଦର୍ଯ୍ୟ ଭିତରେ ମନୁଷ୍ୟକୁ ଆନନ୍ଦ ଆଡ଼କୁ ଆକର୍ଷଣ କରେ । ଗୃହାଣୀ ଓ ଚଳଣି, ସାହିତ୍ୟର ଶରୀର । ଚମକ ହେଉଛି, ତା'ର ପ୍ରାଣ । ସର୍ଜନଶୀଳ ସାହିତ୍ୟ ସମୀକ୍ଷାର ଆଙ୍ଗିକ ତଥା ଆତ୍ମିକ ମୂଲ୍ୟାୟନ ପାଇଁ ଗୃହାଣୀ, ଚଳଣି ଓ ଚମକ ସାହାଯ୍ୟରେ, ସାହିତ୍ୟର କଳାତ୍ମକ ସ୍ଫୁରଣକୁ ସେ ଯଥାର୍ଥ ଭାବେ ଉପଲବ୍‌ଧି କରିଥିଲେ ।

ତତ୍ପର ମାୟାଧର ମାନସିଂହଙ୍କ କାବ୍ୟ-ପ୍ରସିଦ୍ଧି ଅବିସମ୍ବାଦିତ । କିନ୍ତୁ ସମାଲୋଚକ ଭାବେ—ଓଡ଼ିଆ ସାହିତ୍ୟ ଇତିହାସର ପ୍ରଣେତା ଭାବେ, ସେ ସର୍ବାପେକ୍ଷା ଅଧିକ ବିବାଦମାନ । ସାହିତ୍ୟ ଇତିହାସରେ ସାହିତ୍ୟ ସମୀକ୍ଷା, ସ୍ୱକୀୟ ସର୍ଜନଶୀଳ କାବ୍ୟକର୍ତ୍ତା ସ୍ପର୍ଶରେ ସର୍ଜନଶୀଳ ସାହିତ୍ୟ ସମୀକ୍ଷା ସ୍ତରକୁ ଉନ୍ନୀତ ହେବା ସମ୍ଭାବନା ଥିଲା । କିନ୍ତୁ ମାତ୍ରାଧିକ ବ୍ୟକ୍ତିନିଷ୍ଠ ତଥା ବ୍ୟକ୍ତିକେନ୍ଦ୍ରିକ ଦୃଷ୍ଟି ମାନସିଂହଙ୍କ ସମାଲୋଚନାକୁ ଏକପାଦର୍ଶୀ କରିଦେଇଛି । ଗୀତି-କବିତା ସୁଲଭ ଆତ୍ମକେନ୍ଦ୍ରିକତା ସର୍ଜନଶୀଳ ସାହିତ୍ୟସମୀକ୍ଷାର ଏକ ପ୍ରଧାନ ଅନ୍ତରାୟ । କିନ୍ତୁ କାବ୍ୟିକ ଆତ୍ମକେନ୍ଦ୍ରିକତା ଯେଉଁଠାରେ ଅନନ୍ୟ ଓ ଶୁଦ୍ଧ

ସାହିତ୍ୟ ସମୀକ୍ଷାପାଇଁ ଉଦ୍ଦିଷ୍ଟ, ଯେଉଁଠାରେ ତାହା ସର୍ଜନଶୀଳ ଓ ସାର୍ଥକ ହୋଇପାରିଛି । ଏହି ପରିପ୍ରେକ୍ଷୀରେ ସବୁଜ-ସ୍ରଷ୍ଟାମାନଙ୍କ ବିରୋଧରେ ମାନସିଂହଙ୍କ ଅଭିଯୋଗକୁ ଗ୍ରହଣ କରାଯାଇପାରେ—

"ବିଦେଶୀଭାବ ଲୋକମାନଙ୍କୁ ବିଦେଶୀ କରେ ନାହିଁ, ବିଦେଶୀ ବେଶ ହିଁ ଲୋକଙ୍କୁ ଇତର କରିଦଏ × × ଦେଶରେ କଅଁା ପୋଲଙ୍ଗ ଫୁଟି ଝରି ପଡ଼ୁଛନ୍ତି । ସେ ଖବର ନ ରଖି, ଏମାନେ ଗ୍ରୀମେଲି, ଗୋଲାପ, ବେଲଫୁଲର ଗନ୍ଧଆଣି ଆମକୁ ସୁଙ୍ଘାଇଲେ । ସାଧବଝିଅ ନଈରେ ଗାଧୋଇଲା ବେଳେ, ଛିଣ୍ଡିପଡ଼ିଥିବା ବାରହାତ ଲମ୍ବାବାଳକୁ ସୁନା ଫରୁଆରେ ପୂରାଇ ପାଣିରେ ଭସାଇଦେଇ ଅନାଇ ରହିଛି । ସେ ଦୃଶ୍ୟ ସେମାନେ ଦେଖୁନାହାନ୍ତି । ସେମାନେ ସବୁଜପରୀ, ଗୋଲାପୀ ପରୀର ନୃତ୍ୟ ଆମକୁ ଦେଖାଉଛନ୍ତି ।"

ଉଦ୍ଧୃତ ଉକ୍ତି, ସବୁଜ କବି-ଗୋଷ୍ଠୀ ବିରୋଧରେ ଏକ ଅସୂୟାମୂଳକ ଆକ୍ଷେପ ବା ଅଭିଯୋଗ ନୁହେଁ । ବରଂ ଜାତୀୟତାର ସ୍ୱାଭିମାନବୋଧ ନେଇ ଜଣେ ସ୍ରଷ୍ଟାର ଏହା ଏକ ବେଦନାବିଦ୍ଧ ଅନୁଭୂତି ତଥା ସର୍ଜନଶୀଳ ସମୀକ୍ଷା—ଏହି ସମୀକ୍ଷା ସ୍ରଷ୍ଟା ମାନସିଂହଙ୍କ ପ୍ରତିଭାପାଇଁ ଏକ ଆହ୍ୱାନରୂପେ ଦେଖାଦେଇଛି । ଅନ୍ୟ କଥାରେ କହିଲେ, ଏହା କବିଙ୍କ ସ୍ୱକୀୟ କାବ୍ୟ ପ୍ରତିଭାର ନିୟାମକ ତଥା ଜୀବନଦର୍ଶନର ଭୂମିକା ଗ୍ରହଣ କରିଛି । ସବୁଜ ଗୋଷ୍ଠୀର ପରମ୍ପରାବିହୀନ, ଛିନ୍ନମୂଳ ରୁଚି, ଦୃଷ୍ଟିଭଙ୍ଗୀ, ସର୍ବୋପରି କଥାବସ୍ତୁ ବା କାବ୍ୟିକ ବକ୍ତବ୍ୟକୁ ସମର୍ଥନ କରି ନ ପାରି, ମାନସିଂହ ତୀବ୍ର କାବ୍ୟିକ ପ୍ରତିକ୍ରିୟା ତଥା ପ୍ରତିବାଦ ଜଣାଇଛନ୍ତି । ପୁଣି କେବଳ ପ୍ରତିବାଦ ନୁହେଁ, ସ୍ୱକୀୟ କାବ୍ୟସୃଷ୍ଟିର ସ୍ତରେ ସ୍ତରେ ଏହି ପ୍ରତିକ୍ରିୟାର ରସୋତ୍ତୀର୍ଣ୍ଣ କାବ୍ୟିକ ପ୍ରାମାଣିକତା ସୃଷ୍ଟି କରିଛନ୍ତି । ବସ୍ତୁତଃ, 'ସବୁଜ କବିତାରେ ପରଧର୍ମ' ଭଳି ସମୀକ୍ଷା ବେଦନାବିଦ୍ଧ ହୃଦୟର 'ଜାତୀୟତାବୋଧରେ' ଉଦ୍‌ବୁଦ୍ଧ ହୋଇ, ଶୁଦ୍ଧ ସର୍ଜନଶୀଳ ସାହିତ୍ୟ ସ୍ତରକୁ, ସମୁନ୍ନୀତ ହୋଇପାରିଛି ।

**ଶ୍ରୀ ଅଭିନ୍ନଚନ୍ଦ୍ର ସାହୁ**

'ଓଡ଼ିଆ ଗବେଷଣା ପରିଷଦ'ର ପ୍ରଥମ ବାର୍ଷିକୋତ୍ସବ (୨୫।୧୦।୧୯୮୧) ଉପଲକ୍ଷେ 'ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷା' ସମ୍ପର୍କରେ ଏକ ସଂସ୍ଥାନ ଅନୁଷ୍ଠିତ ହୋଇଥିଲା । ସେଦିନ ପୂର୍ବାହ୍ଣ ଘ୧୦-୪୫ ମିନିଟ୍‌ରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ଏକ ମନୋଜ୍ଞ ଓ ଗୁରୁଗମ୍ଭୀର ପରିବେଶ ମଧ୍ୟରେ ଏହାର ଅନୁଷ୍ଠାନ ଆମର ସାରସ୍ୱତ ଇତିହାସରେ ବାସ୍ତବିକ ଏକ ଉଲ୍ଲେଖଯୋଗ୍ୟ ଘଟଣା । ପରିଷଦର ଉପ-ସଭାପତି ଶ୍ରୀ ଚିତ୍ତରଞ୍ଜନ ଦାସ ଏହି ସଂସ୍ଥାନରେ ଅଧ୍ୟକ୍ଷତା କରିଥିଲେ । ପରିଷଦର ସଂପାଦକ ଡକ୍‌ଟର କ୍ଷେତ୍ରବାସୀ ନାୟକ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ଦେବା ଉତ୍ତାରୁ ଅଧ୍ୟକ୍ଷ ଶ୍ରୀ ଦାସ ସଂସ୍ଥାନ ବିଷୟରେ ପ୍ରାରମ୍ଭିକ ମନ୍ତବ୍ୟ ଦେଇ କହିଥିଲେ ଯେ— "ସାହିତ୍ୟ ଆସରର ଏବେ ଦ୍ୱିତୀୟ ଅଙ୍କ ଆରମ୍ଭ ହେଲା, ଏଠି କେହି ଗୁରୁଜନ, ଅଭିଭାବକ ଆମେ କେହି ନୋହୁଁ; ସାହିତ୍ୟ ସଭାରେ ସାହାରି ରହିବା ଅନୁଚିତ; ଏଇ ଆର୍କିଟାଇପ୍ ଆପଣମାନେ ଭୁଲନ୍ତୁ । ସାହିତ୍ୟର ସମୀକ୍ଷା ଗଣିତ ନୁହେଁ । ପ୍ରଶ୍ନ ଉତ୍ଥିତ ମାତ୍ର, ସମାଧାନ କରାଯାଇନି, ଆଲୋଚନା ସମାଧାନ କରିବ ।" ଅଧ୍ୟକ୍ଷଙ୍କ ନିର୍ଦ୍ଦେଶକ୍ରମେ ସମ୍ପାଦକ ସଂସ୍ଥାନର ସଂକ୍ଷିପ୍ତ ସାର, ପ୍ରାବନ୍ଧିକମାନଙ୍କ ପରିଚୟ ଇତ୍ୟାଦିର ମୁଦ୍ରିତ ବିବରଣୀ ପାଠ କରିଥିଲେ । ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଏହି ସେମିନାର ଆୟୋଜନ ଲାଗି ଆର୍ଥିକ ଅନୁଦାନ ଯୋଗାଇ ଦେଇଥିବାରୁ ଅନୁଷ୍ଠାନ ପକ୍ଷରୁ ଏକାଡେ଼ମୀ କର୍ତ୍ତୃପକ୍ଷଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରାଯାଇଥିଲା ।

ପ୍ରଥମେ ଶାନ୍ତିନିକେତନସ୍ଥ ବିଶ୍ୱଭାରତୀର ଅଧ୍ୟାପକ ଡକ୍‌ଟର ନରେନ୍ଦ୍ରନାଥ ମିଶ୍ର 'କବି ସମୀକ୍ଷକ' ବିଷୟକ ପ୍ରବନ୍ଧ ସଭାକକ୍ଷରେ ପାଠ କରିଥିଲେ । ତତ୍ପରେ ଶ୍ରୀ ଚିତ୍ତରଞ୍ଜନ ଦାସ 'ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା : ଆଭିମୁଖ୍ୟ ଓ ଅଙ୍ଗୀକାର' ନାମକ ସନ୍ଦର୍ଭ ଏବଂ ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଅଧ୍ୟାପକ ଡକ୍‌ଟର ଅନନ୍ତଚରଣ ଶୁକ୍ଳ—ଭାରତୀୟ ଓ ପାଶ୍ଚାତ୍ୟ ପରମ୍ପରାରେ ସର୍ଜନାତ୍ମକ ସମୀକ୍ଷାର ତୁଳନାତ୍ମକ ବିଚାର ପ୍ରବନ୍ଧ ଉପସ୍ଥାପନ କରିଥିଲେ । ଶେଷରେ ଭୁବନେଶ୍ୱରସ୍ଥ ଆଞ୍ଚଳିକ ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକ

ଶ୍ରୀ ଅଭିନ୍ନଚନ୍ଦ୍ର ସାହୁ—'ଓଡ଼ିଆ ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା' ପ୍ରବନ୍ଧ ପାଠ କରିଥିଲେ । ପ୍ରବନ୍ଧଗୁଡ଼ିକ ଯଥାକ୍ରମେ ଏହି ଗ୍ରନ୍ଥରେ ସନ୍ନିବେଶିତ ହୋଇଛି ।

ପରିଷଦର ସଦସ୍ୟ-ସଦସ୍ୟା ତଥା ଉପସ୍ଥିତ ସୁଧୀମଣ୍ଡଳୀ ନାନା ଦିଗରୁ ଉପସ୍ଥାପିତ ପ୍ରବନ୍ଧ ଗୁଡ଼ିକର ପରିଚର୍ଚ୍ଚା କରିଥିଲେ । ଏ ସଂପର୍କରେ ବିଭିନ୍ନ ପ୍ରଶ୍ନ ମଧ୍ୟ ଉତ୍ଥାପିତ ହୋଇଥିଲା ।

ଶ୍ରୀ ସୁଧୀରଚନ୍ଦ୍ର ବେହେରା—ଆଦର୍ଶ ସମୀକ୍ଷା ସର୍ଜନଶୀଳ ସମୀକ୍ଷା କି ?

ଡକ୍ଟର ନରେନ୍ଦ୍ରନାଥ ମିଶ୍ର—ସର୍ଜନଶୀଳ ସାହିତ୍ୟ-ସମୀକ୍ଷା ସ୍ରଷ୍ଟାର ବୌଦ୍ଧିକ ପ୍ରଜ୍ଞା ଓ ସାରସ୍ୱତ ପ୍ରତିଭାରେ ବିଭୂଷିତ । ସାହିତ୍ୟ ଜଗତ୍ ହେଉଛି ଇତର ଜଗତ୍ । ଏହି ସତ୍ୟକୁ ପ୍ରତିପାଦନ କରିବାପାଇଁ 'ସର୍ଜନଶୀଳ ସାହିତ୍ୟ-ସମୀକ୍ଷା ଉଦ୍ଦିଷ୍ଟ । ତେଣୁ ଏହା ଆଦର୍ଶ ସମୀକ୍ଷା ନ ହେବ କାହିଁକି ?

ଶ୍ରୀ ହୃଷୀକେଶ ମଲ୍ଲିକ—ସରଳ ବକ୍ତବ୍ୟ-ଧର୍ମୀ ଅଭିବ୍ୟକ୍ତି ଅପେକ୍ଷା ବ୍ୟଞ୍ଜନାଧର୍ମୀ ଅଭିବ୍ୟକ୍ତି କ'ଣ ସର୍ଜନାତ୍ମକ ସମୀକ୍ଷାର ଭାଷା ?

ଡକ୍ଟର ଅନନ୍ତ ଚରଣ ଶୁକ୍ଳ—ସାଧାରଣତଃ ସର୍ଜନାତ୍ମକ ସମୀକ୍ଷାର ମୂଳ ଧର୍ମ ତିନୋଟି—ଭାବାନୁସ୍ମରଣ, ଆଲଙ୍କାରିକ ଭାଷା ଓ ବ୍ୟକ୍ତିଗତ ପ୍ରସଙ୍ଗ ଉପସ୍ଥାପନ । ରୋମାଣ୍ଟିକ୍ ଓ ଇମ୍ପ୍ରେସନିଷ୍ଟ ସମୀକ୍ଷା ଏହି ପର୍ଯ୍ୟାୟର । ଅଭି-ବ୍ୟକ୍ତିରେ ଟୀକାକାରର ଭୂମିକା ଅପେକ୍ଷା ଲିପିକାର ସ୍ୱୟଂ ସ୍ରଷ୍ଟାର ଭୂମିକା ଏ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ । ବ୍ୟଞ୍ଜନାଧର୍ମୀ ଅଭିବ୍ୟକ୍ତିରେ ସର୍ଜନାତ୍ମକ ସମୀକ୍ଷାର ଗୁଣ ନିହିତ ।

ଶ୍ରୀ ବନମାଳୀ ମିଶ୍ର—ପାଠକର ବୌଦ୍ଧିକ ଆବେଗକୁ ସମ୍ବୋଧିତ କରୁଥିବା ସମୀକ୍ଷା, ସର୍ଜନାତ୍ମକ ହେବ କି ?

ଶ୍ରୀ ଅଭିନ୍ନ ଚନ୍ଦ୍ର ସାହୁ—ଆବେଗଧର୍ମୀ ବ୍ୟକ୍ତିସତ୍ତା ଓ ହେତୁବାଦୀ ନୈର୍ବ୍ୟକ୍ତିକତାର ଯୁଗ୍ମ ମିଳନ ନ ଘଟିଲେ, ସମୀକ୍ଷା ସର୍ଜନଶୀଳ ହୋଇପାରିବ ନାହିଁ । ସର୍ଜନାତ୍ମକ ସମୀକ୍ଷା ପାଠକର ବୌଦ୍ଧିକ ଆବେଗ ଓ ରସବୋଧକୁ ସମ୍ବୋଧିତ କରି ଥାଏ ।

ଡକ୍ଟର ହେମନ୍ତ କୁମାର ଦାସ—Creative criticism ଓ Constructive Criticism କଣ ସମପର୍ଯ୍ୟାୟବାଚୀ ଶବ୍ଦ ?

ଶ୍ରୀଚିତ୍ତରଞ୍ଜନ ଦାସ – ସାହିତ୍ୟକୁ ଏକ ସ୍ୱତନ୍ତ୍ର ଧନ୍ଦା ବୋଲି ଭାବି ସାହିତ୍ୟ ସମୀକ୍ଷାକରୁଥିବା ରଚନାconstructive ନୁହେଁ । ଯେଉଁ ସମୀକ୍ଷା ସାହିତ୍ୟ ତଥା ସାହିତ୍ୟକାରର ଅସଲ ଆକାଂକ୍ଷାଗତ ହୃଦ୍‌ବିସ୍ତାର ଗୁଡ଼ିକୁ ଆବିଷ୍କାର କରେ, ତାହା ଏକାଧାରରେ ସର୍ଜନାତ୍ମକ ଓ ଗଠନାତ୍ମକ ମଧ୍ୟ । ସମୀକ୍ଷା ଦେଇ ସାହିତ୍ୟର ସମସ୍ତ ଭୂମି, ସମୀକ୍ଷିତ ହେଉଥିବା ସାହିତ୍ୟକର ଦୃଷ୍ଟିଗତ ଅନ୍ତର୍ଗଠନ, ତାଙ୍କର ଇତିହାସ, ସମାଜ-ସଂସ୍କୃତି ସବୁ ଅଡ଼କୁ ଦୃଷ୍ଟିପାତ କରୁଥିବା ସମୀକ୍ଷା ତ ହେଉଛି ଅସଲ ସମୀକ୍ଷା । ତାହାହିଁ ସର୍ଜନାତ୍ମକ । ସ୍ୱାଧୀନତା, କର୍ତ୍ତୃତ୍ୱ ଓ କ୍ଷମତା ବିରୁଦ୍ଧରେ ସାହସ ପୋଷଣ ଲାଗି ଏକ ଅଙ୍ଗୀକାର ବହନ କରୁଥିବା ସମୀକ୍ଷା କିମ୍ବା ଦାସତ୍ୱ ଓ ବଶ୍ୟତା ବିରୁଦ୍ଧରେ ଏକ ଶ୍ରଦ୍ଧାଶୀଳ ଉତ୍ସୁକ ହୃଦୟର ଅଙ୍ଗୀକାର ପ୍ରକାଶ କରୁଥିବା ସମୀକ୍ଷା ହେଉଛି ସର୍ଜନଶୀଳ ଓ ଗଠନାତ୍ମକ—Creative ଯେଉଁଠି, Constructive ଅଭିଳାଷ ସେଇଠି ପ୍ରଚ୍ଛନ୍ନ ।

ଶ୍ରୀ ବନମାଳୀ ନାଏକ—ସବୁପ୍ରକାର ତୁଳନାତ୍ମକ ସମୀକ୍ଷା ସର୍ଜନାତ୍ମକ ହେବ କି ? ଯଦି ନ ହେବ, କାହିଁକି ?

ଡକ୍ଟର ଅନନ୍ତ ଚରଣ ଶୁକ୍ଳ – ଭାରତୀୟ ଓ ପାଶ୍ଚାତ୍ୟ ସମୀକ୍ଷା ପରମ୍ପରାରେ ତୁଳନାତ୍ମକ ସମୀକ୍ଷାର ଦୃଷ୍ଟାନ୍ତ ଦୁର୍ଲଭ ନୁହେଁ । ଏହି ସମୀକ୍ଷାର ଅଭିବ୍ୟକ୍ତି ଧାରାରେ ସର୍ଜନାତ୍ମକ ଅଙ୍ଗୀକାର ଓ 'କବି ସମୀକ୍ଷକ'ର ଦୃଷ୍ଟି ଅନୁଭୂତ ହେଉଥିଲେ, ତାହା ସର୍ଜନାତ୍ମକ ନ ହେବ କାହିଁକି ?

ଶ୍ରୀ ପଞ୍ଚାନନ ମହାନ୍ତି—Practical Criticism ଓ Creative Criticism ମଧ୍ୟରେ ସଂପର୍କ କଣ ?

ଡକ୍ଟର ଅନନ୍ତ ଚରଣ ଶୁକ୍ଳ—ସର୍ଜନାତ୍ମକ ସାହିତ୍ୟ ସମୀକ୍ଷାର ଏକ ଶୈଳୀ ହେଉଛି Practical Criticism.

ଶ୍ରୀ ଅଭିନ୍ନ ଚନ୍ଦ୍ର ସାହୁ—ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷା ଏକ ନିର୍ଦ୍ଦିଷ୍ଟ 'ସ୍କୁଲ୍' କି ?

ଶ୍ରୀ ଚିତ୍ତରଞ୍ଜନ ଦାସ – ସୃଷ୍ଟି ସମ୍ପର୍କୀୟ ସମୀକ୍ଷା ଓ ସୃଷ୍ଟିଧର୍ମୀ ସମୀକ୍ଷା ଉଭୟର ମୌଳିକ ସତ୍ତା ଓ ସମୀକ୍ଷକଙ୍କ ଦୃଷ୍ଟିଭଙ୍ଗୀର ବିସ୍ତାରରୁ ଏହା ଠିକଣା କରିଦେବ ।

ପଠିତ ପ୍ରବନ୍ଧଗୁଡ଼ିକର ପରିଚର୍ଚ୍ଚା ଅବସରରେ ସୂଚନା ମିଳିଲା ଯେ ଏ ସମ୍ପର୍କରେ ଅଧିକରୁ ଅଧିକ ଆଲୋଚନା ହେବା ଆବଶ୍ୟକ । ଡକ୍ଟର ନରେନ୍ଦ୍ର ନାଥ ମିଶ୍ର ଉପସ୍ଥିତ ସୁଧୀମଣ୍ଡଳୀଙ୍କ କୌତୂହଳ ମେଣ୍ଟାଇବାକୁ ଯାଇ ପ୍ରକାଶ କଲେ ଯେ, ଏହି ଆଲୋଚନା ପ୍ରକୃତରେ ପ୍ରେରଣା-ସଞ୍ଚାରୀ ହୋଇଛି । ପ୍ରଶ୍ନର ସନ୍ତୋଷଜନକ ଉତ୍ତର ସଙ୍ଗେ ସଙ୍ଗେ ନ ପାଇଲେ, ଉତ୍ତରପାଇଁ ଆଲୋଚନା କରିବା ଓ ମନନଶୀଳ ହୋଇ ନିଜେ ଉତ୍ତର ଖୋଜିବା ଉଚିତ । ଆଜିର ଏହି ଆଲୋଚନା ଭବିଷ୍ୟତରେ ଏ ସମ୍ପର୍କରେ ପୂର୍ଣ୍ଣାଙ୍ଗ ଆଲୋଚନା ପାଇଁ Infrastructureଟିଏ ତିଆରି କରୁ ! ଓଡ଼ିଆ ଗବେଷଣା ପରିଷଦ 'ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା'ର ଭିତ୍ତିସ୍ଥାପନ କଲା । ଏହା ନିର୍ଦ୍ଦିଷ୍ଟ School of thoughtର ବାଟ ଫିଟାଇଲା ନିଶ୍ଚୟ । ଆଗନ୍ତୁକ ସମୀକ୍ଷକଗଣ ତାର ଦାୟାଦ ନ ହେବେ କାହିଁକି ?

ସଂସ୍ଥାନର ଅଧ୍ୟକ୍ଷ ଶ୍ରୀ ଚିତ୍ତରଞ୍ଜନ ଦାସ ଅଭିଭାଷଣ ପ୍ରଦାନ କ୍ରମରେ ପ୍ରକାଶ କଲେ ଯେ—ସାହିତ୍ୟର କୌଣସି ଆଲୋଚନା ସରେନାହିଁ । ଅପୂର୍ଣ୍ଣରୁ ପୂର୍ଣ୍ଣ ହେବାର ଗତିରେ ହିଁ ସାହିତ୍ୟର ଜୀବନଧାରା ପ୍ରବାହିତ । ଆଲୋଚନା ଅପୂର୍ଣ୍ଣ ରହିଲା; ସେଇଥିପାଇଁ ଏହା ସଫଳ ହେଲା । ସିଧା ଉତ୍ତର ସାହିତ୍ୟ ଦିଏ ନାହିଁ । ତାହା ବୋଲି ସାହିତ୍ୟ ଅପୂର୍ଣ୍ଣ ନୁହେଁ । ଗବେଷଣା କେବଳ Inform ନ କରୁ ; ତା ବାହାରେ ସାହିତ୍ୟ ଅଛି, ଏହା ଓଡ଼ିଆ ଜାଣୁ ।

ଏହି ସଂସ୍ଥାନରେ ପରିଷଦର ଅଧିକାଂଶ ସଦସ୍ୟ-ସଦସ୍ୟାଙ୍କ ସମେତ ଅନ୍ୟାନ୍ୟ ନିମନ୍ତ୍ରିତ ବ୍ୟକ୍ତିଙ୍କ ମଧ୍ୟରେ କୁଳପତି ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ଲେକଚରର ଡକ୍ଟର କୃଷ୍ଣବିହାରୀ ଦାଶ, ଓଡ଼ିଶା ସାହିତ୍ୟ ଏକାଡେମୀର ସେକ୍ରେଟେରୀ ଶ୍ରୀ ବାଞ୍ଛାଚରଣ ଦାଶ, ଆସିଷ୍ଟାଣ୍ଟ ସେକ୍ରେଟେରୀ ଶ୍ରୀ କୈଳାସ ବିହାରୀ ଦାସ, ଉତ୍କଳ ସାହିତ୍ୟ ସମାଜର ସଂପାଦକ ଶ୍ରୀ ମୁରାରିମୋହନ ଜେନା ପ୍ରମୁଖ ଯୋଗଦାନ କରିଥିଲେ ।

ଶେଷରେ ଏହି ସଂସ୍ଥାନରେ ସମବେତ ସୁଧୀମଣ୍ଡଳୀ, ପ୍ରାବନ୍ଧିକ ଗବେଷକ ବୃନ୍ଦ ଓ ସଭାପତି ମହୋଦୟଙ୍କ ପ୍ରତି ଗବେଷଣା ପରିଷଦର ସଂପାଦକ ଆନ୍ତରିକ କୃତଜ୍ଞତା ଜ୍ଞାପନ କରିଥିଲେ ।

●

# ପ୍ରାବନ୍ଧିକ ପରିଚିତି

## ଡକ୍ଟର ନରେନ୍ଦ୍ରନାଥ ମିଶ୍ର (୧୯୨୯—)

ବିଶ୍ୱଭାରତୀ ଶାନ୍ତିନିକେତନ ସ୍ନାତକୋତ୍ତର ଓଡ଼ିଆ ବିଭାଗର ଅଧ୍ୟାପକ। ଗତ ପ୍ରାୟ ତିରିଶ ବର୍ଷ ହେଲା ଓଡ଼ିଆ ସାହିତ୍ୟରେ ଗବେଷଣାରତ। ଆଧୁନିକ ଓଡ଼ିଆ କାବ୍ୟଧାରା ଗବେଷଣା କ୍ଷେତ୍ରରେ ତାଙ୍କର ଏକ ବିଶେଷ ଦାନ ରହିଛି ଓ ଅଧିକ ଗବେଷଣା ଲାଗି ଅନ୍ୟମାନଙ୍କୁ ଉଦ୍‌ବୁଦ୍ଧ କରିଛି। ଶାନ୍ତିନିକେତନ ପରି ଏକ ବିଶ୍ୱବିଦ୍ୟା କେନ୍ଦ୍ରରେ ଅବସ୍ଥାପିତ ହୋଇ ରହିଥିବାରୁ ତାଙ୍କର ଗବେଷଣାରେ ଏକ ସୁସ୍ଥ ତୁଳନାତ୍ମକ ଦୃଷ୍ଟିକୋଣ ପରିଲକ୍ଷିତ ହୋଇଥାଏ। ତାଙ୍କର ବିଶେଷ କୃତିଗୁଡ଼ିକ ଭିତରୁ 'ବଳରାମ ଦାସ ଓ ଦାଣ୍ଡି ରାମାୟଣ (୧୯୫୫)', 'ଆଧୁନିକ ଓଡ଼ିଆ କାବ୍ୟଧାରା—ଆଦି ଯୁଗ ଓ ନବଜାଗରଣ ଯୁଗ,' 'ଆଧୁନିକତା ଓ ଓଡ଼ିଆ ସାହିତ୍ୟ ପ୍ରଭୃତି ଉଲ୍ଲେଖ ଯୋଗ୍ୟ।

## ଶ୍ରୀ ଚିତ୍ତରଞ୍ଜନ ଦାସ (୧୯୨୩—)

ଓଡ଼ିଶାରେ ଜଣେ କୃତବିଦ୍ୟ ସାହିତ୍ୟିକ, ପ୍ରବୀଣ ଗବେଷକ ଓ ସର୍ଜନଶୀଳ ଲେଖକ। ଶିକ୍ଷା, ସମାଜତତ୍ତ୍ୱ, ସାହିତ୍ୟ, ଧର୍ମ ଓ ଦର୍ଶନ କ୍ଷେତ୍ରରେ ବିଶେଷଜ୍ଞସମ୍ପନ୍ନ ଦେଶର ଅନ୍ୟତମ ବୁଦ୍ଧିଜୀବୀ। ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ସଂସ୍ଥାର ପରିଚାଳନା ଓ ସଙ୍ଗଠନ ସହ ସଂଯୁକ୍ତ। ଜର୍ମାନ, ଡେନିସ୍ ପ୍ରଭୃତି ଭାଷା ଅଭିଜ୍ଞ, ଏକାଧିକ ଭାରତୀୟ ଭାଷା-ସାହିତ୍ୟରେ ଲେଖନ ଓ ପଠନ-ଯୋଗ୍ୟତା ନିପୁଣ। ପ୍ରାୟ ଅର୍ଦ୍ଧଶତ ପୁସ୍ତକର ରଚୟିତା—ପ୍ରବନ୍ଧ, ରମ୍ୟ-ରଚନା, ସାହିତ୍ୟ ସମାଲୋଚନା, ପର୍ଯ୍ୟଟନ ସାହିତ୍ୟ, ଶିଶୁରଚନା, ଅନୁବାଦ ଏବଂ ସମାଜ-ଦର୍ଶନ ସମ୍ପୃକ୍ତ ଗ୍ରନ୍ଥ ରଚନା କ୍ଷେତ୍ରରେ ସେ, କି ତରୁଣ କି ପ୍ରବୀଣ—ସମସ୍ତଙ୍କ ନିକଟରେ ପରିଚିତ। ତାଙ୍କର କୃତି-ସମଗ୍ର ଭିତରୁ 'ଜୀବନ-

ବିଦ୍ୟାଳୟ,' 'ଶୈଳାତୀର୍ଥ,' 'ଡେନ୍‌ମାର୍କ ଚିଠି', 'ଜାହାଜରେ ମୁଁ ସବନ', ତରଙ୍ଗ ଓ ତଡ଼ିତ୍, ମା ନିଷାଦ', 'ଅଚ୍ୟୁତାନନ୍ଦ ଓ ପଞ୍ଚସଖାଧର୍ମ (୧୯୫୧), 'ଓଡ଼ିଆ ସାହିତ୍ୟର ସାଂସ୍କୃତିକ ପ୍ରକାଶଧାରା' (୧୯୮୧), ଓଡ଼ିଶାର ମହିମାଧର୍ମ (୧୯୫୬) ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ ।

## ଡକ୍ଟର ଅନନ୍ତଚରଣ ଶୁକ୍ଳ (୧୯୪୨ —)

ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ ଇଂରାଜୀ ବିଭାଗର ଅଧ୍ୟାପକ । ସଂସ୍କୃତ, ଦର୍ଶନ ଓ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ଯୋଗ୍ୟତା-ସମ୍ପନ୍ନ ଜଣେ ଗବେଷକ । ତୁଳନାତ୍ମକ ନନ୍ଦନତତ୍ତ୍ୱ ବିଷୟକ ଗବେଷଣା— The Concept of Imitation in Greek and Indian Aesthetics (1977) କ୍ଷେତ୍ରରେ ସେ ବିଶେଷ ସ୍ୱୀକୃତିପ୍ରାପ୍ତ । 'Viswanath Kaviraj Institute of Comparative Literature and Aesthetics' ଅନୁଷ୍ଠାନ ଓ ଜର୍ଣ୍ଣାଲର ସମ୍ପାଦକ । ଆରିଷ୍ଟଟଲ୍‌ କାବ୍ୟତତ୍ତ୍ୱ (୧୯୬୯) ଗ୍ରୀକ-ନାଟକାବଳୀର ଅନୁବାଦ, 'ପଲ୍ଲି କବି' (୧୯୭୧) ଏବଂ କାବ୍ୟତତ୍ତ୍ୱ ବିଷୟକ ବିବିଧ ସନ୍ଦର୍ଭ ରଚନା କରି ରାଜ୍ୟରେ ଜଣେ ସଚେତନ ସାହିତ୍ୟ-ସମାଲୋଚକ ଓ ଗବେଷକ ରୂପେ ସେ ସୁପରିଚିତ ।

## ଅଧ୍ୟାପକ ଶ୍ରୀ ଅଭିନ୍ନଚନ୍ଦ୍ର ସାହୁ (୧୯୩୭—)

ଭୁବନେଶ୍ୱର ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟର ଅଧ୍ୟାପକ—ଆଧୁନିକ ସାହିତ୍ୟର ଗବେଷକ—ଆଧୁନିକ ଓଡ଼ିଆ କବିତାର ପ୍ରାୟୋଗିକ ଆଲୋଚନା କ୍ଷେତ୍ରରେ ବିଶେଷ ଅଭିଜ୍ଞତା-ସମ୍ପନ୍ନ ଜଣେ ସୁପରିଚିତ ସମୀକ୍ଷକ । ଓଡ଼ିଆ ପତ୍ର-ପତ୍ରିକାରେ ଆଲୋଚନାତ୍ମକ ବହୁ ସନ୍ଦର୍ଭ ରଚନାକରି ସମାଲୋଚନା-ସାହିତ୍ୟରେ ସେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ସଂପ୍ରତି ଓଡ଼ିଆ ଗଳ୍ପ ସାହିତ୍ୟ ବିଷୟରେ ସେ ଗବେଷଣାରତ ।



ସାହିତ୍ୟ-ସମୀକ୍ଷା କ'ଣ ଏକ ନୂତନ ସୃଷ୍ଟି ? ଏହା କ'ଣ ମୂଳ ସାହିତ୍ୟ-ସୃଷ୍ଟିର ଦ୍ୱିଜତ୍ୱ ? ପ୍ରତିଭାର ଯେଉଁ ଅଂଶୁଳ ଅଂଶ ସାହିତ୍ୟ ସୃଷ୍ଟି କରେ, ସେହି ଅଂଶଟି ମଧ୍ୟ ସାହିତ୍ୟ-ସମୀକ୍ଷା କାର୍ଯ୍ୟରେ କୃତିତ୍ୱ ପ୍ରଦର୍ଶନ କରିପାରେ । ସେତେବେଳେ ସାହିତ୍ୟ-ସମୀକ୍ଷା ସର୍ଜନାର ନବଦିଗନ୍ତ ସ୍ପର୍ଶ କରିବା କ'ଣ ବିଚିତ୍ର କଥା ? ଏହି ସବୁ ମୌଳିକ ପ୍ରଶ୍ନବାଚୀ ଓ ଜିଜ୍ଞାସା ଭିତ୍ତିରେ 'ଓଡ଼ିଆ ଗବେଷଣା ପରିଷଦ୍' ଏହାର ପ୍ରଥମ ବାର୍ଷିକୋତ୍ସବ ଉପଲକ୍ଷେ ଏକ ମନୋଜ୍ଞ ସଂସାଦର ଆୟୋଜନ କରିଥିଲେ । ତାହାରି ଫଳଶ୍ରୁତି ହିଁ ଏହି ଗ୍ରନ୍ଥ ।

ଆମର ସାରସ୍ୱତ ଇତିହାସରେ ଏହି ନୂତନ ପୁସ୍ତକ ବିଚାର-ଆଲୋଚନା ସର୍ବପ୍ରଥମ । ଏହା ସମାଲୋଚନା ସାହିତ୍ୟର ଏକ ଦ୍ୱିଧାଗ୍ରସ୍ତ ଦିଗ୍‌ବଳୟ ଉନ୍ମୋଚିତ କରିଛି । ଏଥିରେ ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷାର ସ୍ୱରୂପ-ପ୍ରକୃତି ଏବଂ ଓଡ଼ିଆ ସାହିତ୍ୟ ସମେତ ପୃଥିବୀର କେତେକ ପ୍ରଧାନ ପ୍ରଧାନ ପ୍ରାଚୀନ ତଥା ଆଧୁନିକ ସାହିତ୍ୟରେ ଏଭଳି ସମୀକ୍ଷାଧାରା ସଂପର୍କରେ ଆଲୋଚନା କରିଛନ୍ତି —ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ସଂସ୍କୃତି-କେନ୍ଦ୍ରର ସୁପରିଚିତ ସମାଲୋଚକବୃନ୍ଦ ।